# ଦ୍ୱନ୍ଦ୍ୱାତ୍ମକ ଓ
# ଐତିହାସିକ ବସ୍ତୁବାଦ



ଯୋଷେଫ୍ ଷ୍ଟାଲିନ୍

# ଦ୍ୱନ୍ଦ୍ୱାତ୍ମକ ଓ
# ଐତିହାସିକ ବସ୍ତୁବାଦ



## ଯୋଷେଫ୍ ଷ୍ଟାଲିନ୍

ଭାଷାନ୍ତର

ଅଧ୍ୟାପକ ନୀଳମଣି ସାହୁ

# ଦ୍ୱନ୍ଦ୍ୱାତ୍ମକ ଓ ଐତିହାସିକ ବସ୍ତୁବାଦ

ଲେଖକ

**ଯୋଷେଫ୍ ଷ୍ଟାଲିନ୍**

ଭାଷାନ୍ତର

ଅଧ୍ୟାପକ ନୀଳମଣି ସାହୁ

ପ୍ରଥମ ପ୍ରକାଶନ

ଫେବୃଆରୀ ୨୦୧୩

ପ୍ରକାଶ ସଂଖ୍ୟା

୧୦୦୦

ପ୍ରକାଶକ

**ନବଜନବାଦୀ ପ୍ରକାଶନ୍**

ରାମକୃଷ୍ଣ ନଗର, ବ୍ରହ୍ମପୁର

ଫୋନ : ୯୪୩୭୧୬୬୩୯୧

ମୁଦ୍ରକ

**ବାସନ୍ତୀ ପ୍ରେସ୍**

ବ୍ରହ୍ମପୁର

ଟ.୨୦/-

ଟଙ୍କା ମାତ୍ର

# ଷ୍ଟାଲିନ୍‌ଙ୍କ
# ଦ୍ୱନ୍ଦ୍ୱାତ୍ମକ ଓ ଐତିହାସିକ ବସ୍ତୁବାଦ

ଷ୍ଟାଲିନ୍‌ଙ୍କ *ଦ୍ୱନ୍ଦ୍ୱାତ୍ମକ ଓ ଐତିହାସିକ ବସ୍ତୁବାଦ* ର ସାରାଂଶକୁ ଇଂଲଣ୍ଡର ପ୍ରଖ୍ୟାତ ମାର୍କ୍ସବାଦୀ ଦାର୍ଶନିକ ମଉରିସ୍ କର୍ନଫର୍ଦ (Maurice Cornforth) ତାଙ୍କର ବହି *ରିଡ଼ରସ୍ ଗାଇଡ଼୍ ଟୁ ଦି ମାର୍କ୍ସିଷ୍ଟ କ୍ଲାସିକ୍ସ (Readers' Guide to The Marxist Classics)* ରେ ଏହି ଭାବେ ବ୍ୟକ୍ତ କରିଛନ୍ତି:

''ଷ୍ଟାଲିନ୍‌ଙ୍କ *ଦ୍ୱନ୍ଦ୍ୱାତ୍ମକ ଓ ଐତିହାସିକ ବସ୍ତୁବାଦ* ନାମକ ଲେଖାଟି *ସୋଭିଯେତ୍ ୟୁନିଅନ୍‌ର କମ୍ୟୁନିଷ୍ଟ ପାର୍ଟି (ବଲଶେଭିକ୍)'ର ଇତିହାସ (History of the Communist Party of the Soviet Union (Bolsheviks))* ପୁସ୍ତକର ଚତୁର୍ଥ ଅଧ୍ୟାୟରୁ ଅଣା ଯାଇଛି । ଦ୍ୱନ୍ଦ୍ୱାତ୍ମକ ବସ୍ତୁବାଦର ସଂଜ୍ଞା ଦେବାକୁ ଯାଇ ତାହା ''ମାର୍କ୍ସବାଦୀ-ଲେନିନବାଦୀ ପାର୍ଟିର ବିଶ୍ୱ ଦୃଷ୍ଟିକୋଣ'' ବୋଲି କହି ସେ (ଷ୍ଟାଲିନ୍) ତାର ବ୍ୟାଖ୍ୟାକରି କହୁଛନ୍ତି ଯେ ପଦ୍ଧତି ଦୃଷ୍ଟିରୁ ଏହା ଦ୍ୱନ୍ଦ୍ୱାତ୍ମକ ଓ ତତ୍ତ୍ୱ ଦୃଷ୍ଟିରୁ ଏହା ବସ୍ତୁବାଦୀ ଅଟେ। ଆଉ ଐତିହାସିକ ବସ୍ତୁବାଦ ହେଉଛି ସାମାଜିକ ଜୀବନର ଅଧ୍ୟୟନ ପାଇଁ ଦ୍ୱନ୍ଦ୍ୱାତ୍ମକ ବସ୍ତୁବାଦର ନୀତିସମୂହର ସାମାଜିକ କ୍ଷେତ୍ରକୁ ସଂପ୍ରସାରଣ ।

''ଏହି ଲେଖାଟିରେ ସେ (୧) ମାର୍କ୍ସବାଦୀ ଦ୍ୱନ୍ଦ୍ୱାତ୍ମକ ପଦ୍ଧତି, (୨) ମାର୍କ୍ସବାଦୀ ଦାର୍ଶନିକ ବସ୍ତୁବାଦ ଓ (୩) ମାର୍କ୍ସବାଦୀ ସମାଜ ବିଜ୍ଞାନର ପ୍ରମୁଖ ବୈଶିଷ୍ଟ୍ୟଗୁଡ଼ିକର ଅତି ନିପୁଣ ମାନର ବ୍ୟାଖ୍ୟା କରିଛନ୍ତି। ଏଥିରେ ସମାଜବାଦ ପାଇଁ ଶ୍ରମିକ ଶ୍ରେଣୀର ସଂଗ୍ରାମ ପଥରେ ମାର୍କ୍ସବାଦୀ ତତ୍ତ୍ୱର ବିକାଶ ଓ ପ୍ରୟୋଗଜନିତ ସମୁଦାୟ ଅଭିଜ୍ଞତାର ଫଳାଫଳର ସାରାଂଶ ଦିଆ ଯାଇଛି ।

''୧. ଷ୍ଟାଲିନ୍ ଦର୍ଶଉଛନ୍ତି, କିପରି ମାର୍କ୍ସବାଦୀ ଦ୍ୱନ୍ଦ୍ୱାତ୍ମକ ପଦ୍ଧତି ବସ୍ତୁଗୁଡ଼ିକୁ ସେମାନଙ୍କର ପରସ୍ପର ସହ ସମ୍ପର୍କ ଭିତ୍ତିରେ, ସେମାନଙ୍କର ଗତି ଭିତ୍ତିରେ ହିଁ ବିଚାର କରିଥାଏ। ପରିମାଣାତ୍ମକ ପରିବର୍ତ୍ତନର ଗୁଣାତ୍ମକ ପରିବର୍ତ୍ତନକୁ ରୂପାନ୍ତର ଭିତର ଦେଇ, ଓ ବସ୍ତୁଗୁଡ଼ିକର ଅନ୍ତର୍ନିହିତ ଦ୍ୱନ୍ଦ୍ୱଗୁଡ଼ିକର ଉନ୍ମୋଚନ ଭିତର ଦେଇ ହିଁ ବିକାଶର ବିଚାର କରାଯାଇ ଥାଏ । ଆମେ ଯାହାର ବି ବିଚାର କରୁନା କାହିଁକି, ସର୍ବଦା କିଛି ନା

କିଛି ସତ୍ତାକୁ ଆସୁଥିବ ଓ ଆଉ କିଛି ନା କିଛି ସତ୍ତା ହରଉଥିବ, କିଏ ଉଭା ହେଉଥିବ ତ ଆଉ କିଏ ଉଭେଇ ଯାଉଥିବ। ତେଣୁ ନୂଆ ଓ ପୁରୁଣା ମଧ୍ୟରେ ସଂଘର୍ଷ ସମସ୍ତ ପ୍ରକାରର ବିକାଶର ଚାଳନା ଶକ୍ତି *(motive force)* ହୋଇଥାଏ ।

''୨. ଷ୍ଟାଲିନ୍ ଦର୍ଶଉଛନ୍ତି, ବସ୍ତୁବାଦର ବିଚାରରେ ଜଗତ କିପରି ତା ନିଜ ସ୍ୱଭାବରୁ ବସ୍ତୁଗତ, କିପରି ବସ୍ତୁଜଗତ ମୌଳିକ ଓ ଚିନ୍ତାଜଗତ ଗୌଣ, ତଥା କିପରି ବସ୍ତୁଜଗତ ଓ ତାର ନିୟମଗୁଡ଼ିକୁ ସମ୍ପୂର୍ଣ୍ଣରୂପେ ଜାଣିବା ସମ୍ଭବ ।

''୩. ଷ୍ଟାଲିନ୍ ଦର୍ଶଉଛନ୍ତି, ସମାଜର ବିକାଶ ମଧ୍ୟ କିପରି ଧରାବନ୍ଧା ନିୟମାନୁସାରେ ହୋଇଥାଏ, ଯେଉଁଥି ପାଇଁ ଇତିହାସର ଅଧ୍ୟୟନ ମଧ୍ୟ ଏକ ବିଜ୍ଞାନ ହୋଇଯାଏ। ତେଣୁ ସମାଜର ବିକାଶର ନିୟମଗୁଡ଼ିକର ଜ୍ଞାନ ଦ୍ୱାରା ହିଁ ଶ୍ରମିକ ଶ୍ରେଣୀର ପାର୍ଟି ପରିଚାଳିତ ହେବା ଆବଶ୍ୟକ ।

''ସମାଜର ବାସ୍ତବ ଜୀବନ ମଧ୍ୟରେ ହିଁ ସର୍ବଦା ସାମାଜିକ ବିକାଶର ନିର୍ଦ୍ଧାରକ ଶକ୍ତିକୁ ଖୋଜିବାକୁ ହେବ, ଏବଂ ଏହା ହିଁ ମଣିଷର ଧାରଣା, ତତ୍ତ୍ୱ ଓ ରାଜନୈତିକ ଅନୁଷ୍ଠାନସମୂହର ବିକାଶ ପାଇଁ ଭିତ୍ତିଭୂମି ହୋଇ ଥାଏ ।

''ତଥାପି, ଏଠାରେ ଷ୍ଟାଲିନ୍ ବ୍ୟାଖ୍ୟାକରି କହୁଛନ୍ତି, ଏହାର ଅର୍ଥ ଏୟା ନୁହେଁ ଯେ ତତ୍ତ୍ୱ ଓ ରାଜନୈତିକ ଅନୁଷ୍ଠାନଗୁଡ଼ିକର ସାମାଜିକ ଜୀବନରେ କୌଣସି ମହତ୍ତ୍ୱ ନାହିଁ । ଓଲଟା, ବାସ୍ତବ ଜୀବନର ନୂଆ ବିକାଶମୁଖୀ ଶକ୍ତିଗୁଡ଼ିକର ଭିତ୍ତିଭୂମି ଉପରେ ଯେଉଁ ତତ୍ତ୍ୱ ଓ ରାଜନୈତିକ ଅନୁଷ୍ଠାନଗୁଡ଼ିକ ଦେଖା ଦେଇ ଥାଆନ୍ତି ସେମାନେ ସେହି ଭିତ୍ତିଭୂମୀକ ଶକ୍ତିଗୁଡ଼ିକର ବିକାଶ ପାଇଁ ନିଜେ ସକ୍ରିୟ ଶକ୍ତି ହୋଇ ଯାଆନ୍ତି ।

''ସମାଜର ବିକାଶକୁ ନିର୍ଦ୍ଧାରଣ କରୁଥିବା ବାସ୍ତବ ଜୀବନର ଜଟୀଳ ପରିସ୍ଥିତିଗୁଡ଼ିକ ମଧ୍ୟରେ ପ୍ରମୁଖ ଶକ୍ତି ହେଉଛି *ଉତ୍ପାଦନ ପଦ୍ଧତି ।* ଏଠି ଷ୍ଟାଲିନ୍ ପ୍ରଭେଦ ଦର୍ଶେଇ କହୁଛନ୍ତି, (୧) *ଉତ୍ପାଦିକା ଶକ୍ତି* (କ) ଉତ୍ପାଦନ ଯନ୍ତ୍ରପାତି ତଥା (ଖ) ଉତ୍ପାଦନ ଅଭିଜ୍ଞତା ଓ ଦକ୍ଷତା ଥିବା ଜନଗଣଙ୍କୁ ନେଇ ଗଠିତ ହୋଇଥାଏ ଏବଂ (୨) *ଉତ୍ପାଦନ ସମ୍ବନ୍ଧର* ସାମଗ୍ରୀକ ରୂପ ସମାଜର *ଅର୍ଥନୈତିକ ଢାଞ୍ଚା* ହୋଇଥାଏ ।

''ସେ ଦର୍ଶଉଛନ୍ତି, ଉତ୍ପାଦିକା ଶକ୍ତିଗୁଡ଼ିକର କିପରି ନିରନ୍ତର ବିକାଶ ହୋଇଥାଏ ଏବଂ ସେମାନଙ୍କର ବିକାଶର ଅନୁରୂପ ଭାବେ କିପରି ପାଞ୍ଚଟି ମୁଖ୍ୟ ଧରଣର ଉତ୍ପାଦନ ସମ୍ବନ୍ଧ ରହି ଆସିଛି - ଆଦିମ ସାମ୍ୟବାଦ, ଦାସତ୍ୱ, ସାମନ୍ତବାଦ, ପୁଞ୍ଜିବାଦ ଓ ସମାଜବାଦ ।

''ଉତ୍ପାଦନର ତିନୋଟି ମୁଖ୍ୟ ବୈଶିଷ୍ଟ୍ୟକୁ ନଜରରେ ରଖା ଯାଇଛି ।

''(କ) ଉତ୍ପାଦନ କେବେହେଁ ଦୀର୍ଘ କାଳ ପାଇଁ ଅଚଳ ହେଇ ଗୋଟିଏ ସ୍ଥିତିରେ ରହି ଯାଏନା, ବରଂ ଅହରହ ପରିବର୍ତ୍ତନ ଓ ସର୍ବଦା ବିକାଶମୁଖୀ ହୋଇ ରହିଥାଏ ।

''(ଖ) ଉତ୍ପାଦନ ପଦ୍ଧତିର ପରିବର୍ତ୍ତନ ଓ ବିକାଶ ସର୍ବଦା ଉତ୍ପାଦିକା ଶକ୍ତିର ପରିବର୍ତ୍ତନ ଓ ବିକାଶରୁ ହିଁ ଆରମ୍ଭ ହୋଇଥାଏ। ପ୍ରଥମେ, ଉତ୍ପାଦିକା ଶକ୍ତିଗୁଡ଼ିକର ପରିବର୍ତ୍ତନ ଓ ବିକାଶ ହୋଇଥାଏ, ଏବଂ ପରେ, ଏହି ପରିବର୍ତ୍ତନ ଉପରେ ନିର୍ଭର କରି ଓ ତାର ଅନୁରୂପ ହୋଇ, ଉତ୍ପାଦନ ସମ୍ବନ୍ଧର, ଅର୍ଥନୈତିକ ସମ୍ବନ୍ଧର ପରିବର୍ତ୍ତନ ହୋଇଥାଏ ।

''(ଗ) ପୁରୁଣା ସମାଜ ମଧ୍ୟରେ ହିଁ ନୂଆ ଉତ୍ପାଦିକା ଶକ୍ତି ଓ ଉତ୍ପାଦନ ସମ୍ବନ୍ଧଗୁଡ଼ିକ ଦେଖା ଦେଇଥାଏ ଏବଂ ତାହା ଘଟିଥାଏ ମଣିଷର ଇଚ୍ଛା ଓ ଅଭିପ୍ରାୟ ଠୁଁ ସ୍ୱାଧୀନ ଭାବେ ।

''ବିକାଶର ସ୍ରୋତରେ ଏମିତି ସମୟ ଆସି ପହଞ୍ଚେ ଯେତେବେଳେ ଉତ୍ପାଦିକା ଶକ୍ତିର ଆହୁରି ଅଧିକ ବିକାଶ ପଥରେ ଉତ୍ପାଦନ ସମ୍ବନ୍ଧର ପ୍ରଚଳିତ ବ୍ୟବସ୍ଥା ପ୍ରତିବନ୍ଧକ ହୋଇଯାଏ । ତାପରେ ଦେଖା ଦେଇଥାଏ ସାମାଜିକ ବିପ୍ଳବର ଏକ ଯୁଗ। ପୁରୁଣା ଉତ୍ପାଦନ ସମ୍ବନ୍ଧର ବୈପ୍ଳବିକ ପତନ ଘଟେଇ ତା ସ୍ଥାନରେ ସ୍ଥାପିତ ହୁଏ ନୂଆ ଉତ୍ପାଦନ ସମ୍ବନ୍ଧ, ଏବଂ ତାହା ସଙ୍ଘଠିତ ହୋଇଥାଏ ଶ୍ରେଣୀ ସଂଗ୍ରାମ ଦ୍ୱାରା, ପୁରୁଣା ଶାସକ ଶ୍ରେଣୀର ପତନ ଘଟେଇ ଏକ ନୂଆ ଶାସକ ଶ୍ରେଣୀ କ୍ଷମତା ଦଖଲ କରିବା ଦ୍ୱାରା ।

''ଷ୍ଟାଲିନ୍ ଦର୍ଶେଇଛନ୍ତି, ପୁଞ୍ଜିବାଦୀ ଉତ୍ପାଦନ ସମ୍ବନ୍ଧ କିପରି ଆହୁରି ଅଧିକ ବିକାଶର ପ୍ରତିବନ୍ଧକ ହୋଇଛି, ଏବଂ ସମାଜବାଦୀ ବ୍ୟବସ୍ଥାରେ କିପରି ଉତ୍ପାଦିକା ଶକ୍ତିର ଅଧିକରୁ ଅଧିକ, ପ୍ରବଳ ବିକାଶ ପାଇଁ ପଥ ଉନ୍ମୁକ୍ତ ହୋଇ ରହିଛି ।

''ଶେଷରେ ସେ ମାର୍କ୍ସଙ୍କର *ରାଜନୈତିକ ଅର୍ଥଶାସ୍ତ୍ରର ସମାଲୋଚନା (Critique of Political Economy)* ର ମୁଖବନ୍ଧର ସେଇ ଅଂଶଟିକୁ ଉଦ୍ଧୃତ କରୁଛନ୍ତି ଯେଉଁଠି ମାର୍କ୍ସ ଐତିହାସିକ ବସ୍ତୁବାଦର ସାରାଂଶର ସଂକ୍ଷିପ୍ତ ବିବରଣୀ ଦେଇଛନ୍ତି ।

''ଏଇ ଅଂଶଟିରେ ମାର୍କ୍ସ କହିଥିଲେ:

''୧. ସାମାଜିକ ଉତ୍ପାଦନରେ ମଣିଷମାନେ ସେମାନଙ୍କ ଇଚ୍ଛା ଠୁଁ ସ୍ୱାଧୀନ ଭାବେ ଉପୁଜି ଥିବା ନିର୍ଦ୍ଦିଷ୍ଟ ଉତ୍ପାଦନ ସମ୍ବନ୍ଧଗୁଡ଼ିକରେ ଜଡ଼ିତ ହୋଇ ଯାଆନ୍ତି । ଏଗୁଡ଼ିକର ସମଷ୍ଟିକୁ ନେଇ ହିଁ ସମାଜର ଅର୍ଥନୈତିକ ଢାଞ୍ଚା ଗଠିତ ହୋଇଥାଏ ।

''୨. ଅର୍ଥନୈତିକ ଢାଞ୍ଚା ହେଉଛି ସେହି ଅସଲ ଭିତ୍ତି ଯାହା ଉପରେ ଉଭା ହୋଇଥାଏ ଆଇନଗତ ଓ ରାଜନୈତିକ ଉପରିଢାଞ୍ଚା (superstructure), ଓ ଯାହାର ଅନୁରୂପ ହୋଇଥାଏ ସାମାଜିକ ଚେତନାର ନିର୍ଦ୍ଦିଷ୍ଟ ଆକାରସମୂହ ।

''୩. ତେଣୁ ବାସ୍ତବ ଜୀବନରେ ଉତ୍ପାଦନ ପଦ୍ଧତି ହିଁ ସାମାଜିକ, ରାଜନୈତିକ ଓ ବୌଦ୍ଧିକ ଧାରାଗୁଡ଼ିକୁ ସାଧାରଣ ଭାବେ ନିର୍ଦ୍ଧାରଣ କରିଥାଏ । ମଣିଷର ଚେତନା ତାର ଅସ୍ତିତ୍ୱର ନିର୍ଦ୍ଧାରଣ କରି ନଥାଏ, ବରଂ ଏହାର ଓଲଟା, ତାର ସାମାଜିକ ଅସ୍ତିତ୍ୱ ହିଁ ତାର ଚେତନାର ନିର୍ଦ୍ଧାରଣ କରିଥାଏ ।

"୪. ସେମାନଙ୍କର ବିକାଶର କୌଣସି ଏକ ସ୍ତରରେ ସମାଜର ଉତ୍ପାଦିକା ଶକ୍ତିଗୁଡ଼ିକ ଓ ପ୍ରଚଳିତ ଉତ୍ପାଦନ ସମ୍ବନ୍ଧଗୁଡ଼ିକ ମଧ୍ୟରେ ସଂଘର୍ଷ ଘଟେ । ଉତ୍ପାଦିକା ଶକ୍ତିର ବିକାଶର ଆକାରଗତ ପାର୍ଥକ୍ୟ ଯୋଗୁଁ ଏହି ସମ୍ବନ୍ଧଗୁଡ଼ିକ ସେଗୁଡ଼ିକର ପ୍ରତିବନ୍ଧକ ହୋଇ ଯାଆନ୍ତି ।

"୫. ତାପରେ ଆସେ ସାମାଜିକ ବିପ୍ଳବର ଏକ ଯୁଗ । ଅର୍ଥନୈତିକ ଭିତ୍ତିକୁ ବଦଳା ଯାଏ, ଓ ତାହା ସହ ସମଗ୍ର ଉପରିଢାଞ୍ଚା (superstructure) ଟିକୁ ଯଥା ଶିଘ୍ର ପରିବର୍ତ୍ତନ କରାଯାଏ ।

"୬. ଏହି ଭଳିଆ ପରିବର୍ତ୍ତନଗୁଡ଼ିକର ବିଚାର କଲାବେଳେ ଆମମାନଙ୍କୁ ଉତ୍ପାଦନର ଅର୍ଥନୈତିକ ଅବସ୍ଥାର ବାସ୍ତବ ପରିବର୍ତ୍ତନ ଠୁଁ ଆଇନ, ରାଜନୀତି ଓ ଭାବାଦର୍ଶର ଆକାରଗୁଡ଼ିକୁ - ଯାହାରି ଜରିଆରେ ମଣିଷମାନେ ଏହି ସଂଘର୍ଷ ପ୍ରତି ସଚେତନ ହୋଇଥାନ୍ତି ଓ ଲଢ଼େଇ ଦ୍ୱାରା ତାର ସମାଧାନ କରିଥାନ୍ତି, ସେଗୁଡ଼ିକୁ - ପୃଥକ କରିବାକୁ ହେବ ।

"୭. କୌଣସି ଏକ ସାମାଜିକ ବ୍ୟବସ୍ଥାରେ ଯେଉଁ ସମସ୍ତ ଉତ୍ପାଦିକା ଶକ୍ତିର ବିକାଶର ସୁଯୋଗ ରହିଥାଏ ସେହି ସମସ୍ତ ଉତ୍ପାଦିକା ଶକ୍ତି ବିକଶିତ ନହେବା ଯାଏଁ ସେହି ସାମାଜିକ ବ୍ୟବସ୍ଥାର ବିନାଶ ହୁଏନା, ଓ ଉତ୍ପାଦନର ନୂଆ ତଥା ଉଚ୍ଚତର ସମ୍ବନ୍ଧଗୁଡ଼ିକର ଅସ୍ତିତ୍ୱ ପାଇଁ ଆବଶ୍ୟକୀୟ ବାସ୍ତବ ପରିସ୍ଥିତିଗୁଡ଼ିକ ଖୋଦ୍ ପୁରୁଣା ସମାଜର ଗର୍ଭ ଭିତରେ ପରିପକ୍ୱ ନହେବା ପର୍ଯ୍ୟନ୍ତ ସେଗୁଡ଼ିକ କେବେ ହେଁ ଦେଖା ଦିଏନା ।"

ଏଥିପାଇଁ ମଉରିସ୍ କର୍ନଫର୍ଦଙ୍କ ନିକଟରେ କୃତଜ୍ଞତା ଜ୍ଞାପନ କରି ଆଶା କରୁଛି ଯେ ତାଙ୍କ ଦ୍ୱାରା ପ୍ରଦତ୍ତ ଷ୍ଟାଲିନ୍‌ଙ୍କ "ଦ୍ୱନ୍ଦ୍ୱାତ୍ମକ ଓ ଐତିହାସିକ ବସ୍ତୁବାଦ" ର ସାରାଂଶ ମୂଳ ବହିଟିକୁ ବୁଝିବାରେ ସହାୟକ ହେବ ।

# ଦ୍ୱନ୍ଦ୍ୱାତ୍ମକ ଓ ଐତିହାସିକ ବସ୍ତୁବାଦ

ଦ୍ୱନ୍ଦ୍ୱାତ୍ମକ ବସ୍ତୁବାଦ ହେଉଛି ମାର୍କ୍ସବାଦୀ-ଲେନିନବାଦୀ ପାର୍ଟିର ବିଶ୍ୱ ଦୃଷ୍ଟିକୋଣ । ଏହାକୁ ଦ୍ୱନ୍ଦ୍ୱାତ୍ମକ ବସ୍ତୁବାଦ କହିବା କାରଣ ଏୟା ଯେ ପ୍ରକୃତିର ଘଟଣାବଳୀକୁ ଦେଖିବା ପାଇଁ ଏହାର ଦୃଷ୍ଟିକୋଣ ତଥା ସେଗୁଡ଼ିକୁ ଅନୁଧ୍ୟାନ ଓ ହୃଦୟଙ୍ଗମ କରିବା ପାଇଁ ଏହାର ପଦ୍ଧତି *ଦ୍ୱନ୍ଦ୍ୱାତ୍ମକ* ଅଟେ, ଅଥଚ ପ୍ରାକୃତିକ ଘଟଣାବଳୀର ଅର୍ଥଅର୍ଥାନ୍ତର କରିବା ପାଇଁ ଏହାର ଧାରା ତଥା ସେଗୁଡ଼ିକ ସମ୍ପର୍କରେ ଏହାର ଅବଧାରଣା ଓ ତତ୍ତ୍ୱ "ବସ୍ତୁବାଦୀ" ଅଟେ ।

ସାମାଜିକ ଜୀବନର ଅଧ୍ୟୟନ ପାଇଁ ଦ୍ୱନ୍ଦ୍ୱାତ୍ମକ ବସ୍ତୁବାଦୀ ତତ୍ତ୍ୱସମୂହର ସମ୍ପ୍ରସାରଣ ଆବଶ୍ୟକ ହୋଇଥାଏ ତଥା ସାମାଜିକ ଜୀବନର ଘଟଣାବଳୀ କ୍ଷେତ୍ରରେ, ସମାଜ ଓ ତାର ଇତିହାସ ଅଧ୍ୟୟନ କ୍ଷେତ୍ରରେ, ଦ୍ୱନ୍ଦ୍ୱାତ୍ମକ ବସ୍ତୁବାଦର ସମ୍ପ୍ରସାରିତ ତତ୍ତ୍ୱସମୂହକୁ ପ୍ରୟୋଗ କରିବାକୁ ପଡ଼ିଥାଏ । ଏହି ସମ୍ପ୍ରସାରିତ ତତ୍ତ୍ୱସମୂହ ଓ ସେଗୁଡ଼ିକର ପ୍ରୟୋଗକୁ ଐତିହାସିକ ବସ୍ତୁବାଦ କୁହାଯାଏ ।

ମାର୍କ୍ସ ଓ ଏଙ୍ଗେଲ୍ସ ସେମାନଙ୍କର ଦ୍ୱନ୍ଦ୍ୱାତ୍ମକ ପଦ୍ଧତିର ବର୍ଣ୍ଣନା କଲାବେଳେ ଦ୍ୱନ୍ଦ୍ୱତତ୍ତ୍ୱର ମୁଖ୍ୟ ବୈଶିଷ୍ଟ୍ୟଗୁଡ଼ିକୁ ସୁସଙ୍ଗତ ରୂପରେ ପ୍ରକାଶ କରିଥିବା ଦାର୍ଶନିକ ହିସାବରେ ସାଧାରଣତଃ ହେଗେଲଙ୍କୁ ଦର୍ଶାନ୍ତି। ଅବଶ୍ୟ ଏହାର ଅର୍ଥ ଏହା ନୁହେଁ ଯେ ମାର୍କ୍ସ ଓ ଏଙ୍ଗେଲ୍ସଙ୍କ ଦ୍ୱନ୍ଦ୍ୱତତ୍ତ୍ୱ ଓ ହେଗେଲଙ୍କ ଦ୍ୱନ୍ଦ୍ୱତତ୍ତ୍ୱ ଏକ ଓ ଅଭିନ୍ନ । ଅସଲ କଥା ହେଲା, ହେଗେଲୀୟ ଦ୍ୱନ୍ଦ୍ୱତତ୍ତ୍ୱର ଭାବବାଦୀ ଖୋଳପାକୁ ଫୋପାଡ଼ି ଦେଇ କେବଳ ତାର "ବୌଦ୍ଧିକ ବୀଜ" କୁ ନେଇ ତାର ଆହୁରି ଅଧିକ ବିକାଶ ଘଟେଇ ମାର୍କ୍ସ ଓ ଏଙ୍ଗେଲ୍ସ ତାକୁ ଏକ ଆଧୁନିକ ବିଜ୍ଞାନର ଆକାର ଦେଲେ ।

ମାର୍କ୍ସ କହିଛନ୍ତି, "ମୋର ଦ୍ୱନ୍ଦ୍ୱାତ୍ମକ ପଦ୍ଧତି ହେଗେଲୀୟ ଦ୍ୱନ୍ଦ୍ୱାତ୍ମକ ପଦ୍ଧତି ଠାରୁ କେବଳ ଭିନ୍ନ ନୁହେଁ, ବରଂ ତାହାର ସମ୍ପୂର୍ଣ୍ଣ ବିପରୀତ। ହେଗେଲଙ୍କ ପାଇଁ ... ଚିନ୍ତନ ପ୍ରକ୍ରିୟା - ଯାହାକୁ ସେ 'ପ୍ରତ୍ୟୟ' (Idea) ନାମରେ ଅଭିହିତ କରିଛନ୍ତି, ଏପରି କି ଏକ ସ୍ୱାଧୀନ ବସ୍ତୁରେ ରୂପାନ୍ତର କରିଛନ୍ତି - ହେଉଛି ବାସ୍ତବ ଜଗତର ବିଶ୍ୱକର୍ମା (ସୃଷ୍ଟିକର୍ତ୍ତା), ଏବଂ ବାସ୍ତବ ଜଗତ ହେଲା ସେହି 'ପ୍ରତ୍ୟୟ'ର କେବଳ ମାତ୍ର ବାହ୍ୟ, ଦୃଶ୍ୟମାନ ଆକାର। ଅପର ପକ୍ଷରେ, ମୋ ପାଇଁ ଭାବନା (ideal) କହିଲେ ମଣିଷ

ମନରେ ବାସ୍ତବ ଜଗତର ପ୍ରତିଫଳନ ଓ ଚିନ୍ତନର ବିଭିନ୍ନ ଆକାରକୁ ତାର ରୂପାନ୍ତର ଛଡ଼ା ଅନ୍ୟ କିଛି ନୁହେଁ'' (Karl Marx, *Capital*, Vol. I, p. XXX, George Allen & Unwin Ltd., 1938.)

ମାର୍କ୍ସ ଓ ଏଙ୍ଗେଲ୍ସ ସେମାନଙ୍କର ବସ୍ତୁବାଦର ବର୍ଣ୍ଣନା କଲା ବେଳେ ସାଧାରଣତଃ ଫୟରବାକ୍‌ଙ୍କୁ ଉଲ୍ଲେଖ କରି କହନ୍ତି ଯେ ସେ ହେଉଛନ୍ତି ଜଣେ ଦାର୍ଶନିକ ଯିଏ ବସ୍ତୁବାଦକୁ ତାର ଯଥାର୍ଥ ରୂପରେ ପୁନଃସ୍ଥାପନା କରିଥିଲେ । ଅଥଚ୍, ଏହାର ଅର୍ଥ ଏହା ନୁହେଁ ଯେ ମାର୍କ୍ସ ଓ ଏଙ୍ଗେଲ୍ସଙ୍କ ବସ୍ତୁବାଦ ଏବଂ ଫୟରବାକ୍‌ଙ୍କ ବସ୍ତୁବାଦ ଏକ ଓ ଅଭିନ୍ନ । ବାସ୍ତବରେ, ମାର୍କ୍ସ ଓ ଏଙ୍ଗେଲ୍ସ ଫୟରବାକ୍‌ଙ୍କ ବସ୍ତୁବାଦର ଭାବବାଦୀ ତଥା ଧାର୍ମିକ-ନୈତିକ ବୋଝକୁ ଫୋପାଡ଼ି ଦେଇ କେବଳ ତାର 'ଅନ୍ତସ୍ଥ ବୀଜ'କୁ ନେଇ ତାକୁ ବସ୍ତୁବାଦର ଏକ ବିଜ୍ଞାନୀୟ-ଦାର୍ଶନିକ ତତ୍ତ୍ୱକୁ ବିକଶିତ କଲେ । ଆମେ ଜାଣୁ ଯେ ଯଦିଚ୍ ଫୟରବାକ୍ ମୌଳିକ ଭାବେ ଜଣେ ବସ୍ତୁବାଦୀ ଥିଲେ ତଥାପି ବସ୍ତୁବାଦ ନାମଟି ପ୍ରତି ତାଙ୍କର ଆପତ୍ତି ଥିଲା । ଏଙ୍ଗେଲ୍ସ ଏକାଧିକ ଥର ଘୋଷଣା କରିଛନ୍ତି ଯେ ବସ୍ତୁବାଦୀ ''ଭିତ୍ତି ସତ୍ତ୍ୱେ'' ଫୟରବାକ୍ ''... ପରମ୍ପରାଗତ ଶୃଙ୍ଖଳ ଦ୍ୱାରା ବାନ୍ଧି ହୋଇ ରହିଥିଲେ'' ଏବଂ ସେ ଏହା ମଧ୍ୟ କହିଛନ୍ତି ଯେ ''ଆମେ ତାଙ୍କର ଧର୍ମ ଓ ନୀତିଶାସ୍ତ୍ରର ଦର୍ଶନ ମଧ୍ୟକୁ ପ୍ରବେଶ କରିବା କ୍ଷଣି ଫୟରବାକ୍‌ଙ୍କ ଅସଲ ଭାବବାଦ ସୁସ୍ପଷ୍ଟ ହୋଇଯାଏ ।'' (Karl Marx, *Selected Works*, Eng. Ed., Moscow 1946, Vol. I, pp. 373, 375.)

Dialectics (ଡାୟାଲେକ୍ଟିକ୍ସ - ଦ୍ୱନ୍ଦ୍ୱତତ୍ତ୍ୱ) ଶବ୍ଦଟି ଗ୍ରୀକ୍ ଭାଷାର *dialego* (ଡାୟାଲେଗୋ) ଶବ୍ଦରୁ ଅଣା ଯାଇଛି ଯାହାର ଅର୍ଥ ହେଲା ଆଲୋଚନା କରିବା, ବିତର୍କ କରିବା । ପ୍ରାଚୀନ କାଳରେ ପ୍ରତିପକ୍ଷର ଯୁକ୍ତିରେ ଥିବା ଅନ୍ତର୍ବିରୋଧଗୁଡ଼ିକୁ ପଦାରେ ପକାଇ ଏବଂ ସେଗୁଡ଼ିକୁ ଅତିକ୍ରମ କରି ସତ୍ୟରେ ଉପନୀତ ହେବା ପାଇଁ ଡାୟାଲେକ୍ଟିକ୍ସ ବା ଦ୍ୱନ୍ଦ୍ୱତତ୍ତ୍ୱ ଥିଲା ଏକ ତାର୍କିକ କଳା । ପ୍ରାଚୀନ କାଳର କେତେକ ଦାର୍ଶନିକଙ୍କର ଏହି ବିଶ୍ୱାସ ଥିଲା ଯେ ଚିନ୍ତାରେ ଥିବା ଅନ୍ତର୍ବିରୋଧଗୁଡ଼ିକୁ ପଦାରେ ପକାଇବା ତଥା ବିରୋଧୀ ମତାମତର ସଂଘର୍ଷ ମଧ୍ୟ ଦେଇ ସତ୍ୟରେ ଉପନୀତ ହେବା ହେଉଛି ସବୁଠାରୁ ପ୍ରକୃଷ୍ଟ ପଦ୍ଧତି । ଚିନ୍ତନର ଏହି ଦ୍ୱନ୍ଦ୍ୱାତ୍ମକ ପଦ୍ଧତି ପରବର୍ତ୍ତୀ କାଳରେ ପ୍ରକୃତିର ଘଟଣାବଳୀ ପ୍ରତି ସଂପ୍ରସାରିତ ହୋଇଥିଲା ଏବଂ ପ୍ରକୃତିର ଘଟଣାବଳୀକୁ ବୁଝିବା ପାଇଁ ଏକ ଦ୍ୱନ୍ଦ୍ୱାତ୍ମକ ପଦ୍ଧତି ରୂପେ ବିକଶିତ ହେଲା । ଏହି ଦ୍ୱନ୍ଦ୍ୱାତ୍ମକ ପଦ୍ଧତି ବିଚାର କଲା ଯେ ପ୍ରକୃତି ନିରନ୍ତର ଗତିଶୀଳ, ନିରନ୍ତର ପରିବର୍ତ୍ତନଶୀଳ ତଥା ପ୍ରକୃତିର ବିକାଶ ପ୍ରକୃତି ଭିତରେ ହିଁ ଥିବା ଅନ୍ତର୍ବିରୋଧଗୁଡ଼ିକର ବିକାଶର ଫଳ, ପ୍ରକୃତିର ଘଟଣାବଳୀ ପ୍ରକୃତି ଭିତରେ ହିଁ ଥିବା ବିରୋଧୀ ଶକ୍ତିଗୁଡ଼ିକର କ୍ରିୟା ପ୍ରତିକ୍ରିୟାର ଫଳ ।

ମୌଳିକତା ଦୃଷ୍ଟିରୁ, ଦ୍ୱନ୍ଦ୍ୱବାଦ ଅଧିଭୌତିକବାଦର (metaphysics) ସମ୍ପୂର୍ଣ୍ଣ ବିପରିତ ଅଟେ ।

୧) *ମାର୍କବାଦୀ ଦ୍ୱନ୍ଦ୍ୱାତ୍ମକ ପଦ୍ଧତି* ର ମୁଖ୍ୟ ବୈଶିଷ୍ଟ୍ୟଗୁଡ଼ିକ ହେଉଛି:

କ) ଅଧିଭୌତିକବାଦ (metaphysics)ର ବିପରୀତ ଦୃଷ୍ଟିଭଙ୍ଗୀ ନେଇ ଡାୟାଲେକ୍‌ଟିକ୍ସ (dialectics) ବା ଦ୍ୱନ୍ଦ୍ୱତତ୍ତ୍ୱ ପ୍ରକୃତିକୁ, ବସ୍ତୁ ତଥା ଘଟଣାବଳୀର ଏକ ଆକସ୍ମିକ ସ୍ତୁପ ବୋଲି ବିଚାର କରେନା, ସେଗୁଡ଼ିକ ସମ୍ପର୍କହୀନ, ପରସ୍ପର ଠାରୁ ପୃଥକ, ଗୋଟିଏ ଅପର ଠାରୁ ସ୍ୱାଧୀନ ବୋଲି ବିଚାର କରେନା । ଓଲଟି ସେଗୁଡ଼ିକ ସମ୍ବନ୍ଧିତ, ସଂହତ ଓ ସ୍ୱୟଂସମ୍ପୂର୍ଣ୍ଣ ବୋଲି ବିଚାର କରେ । ଏହାର ବିଚାରରେ, ବସ୍ତୁସମୂହ ଓ ସେଗୁଡ଼ିକୁ ନେଇ ଘଟୁଥିବା ଘଟଣାବଳୀ ଅନ୍ତର୍ନିହିତ ସମ୍ବନ୍ଧ ଦ୍ୱାରା ବନ୍ଧା, ପରସ୍ପର ଉପରେ ନିର୍ଭରଶୀଳ, ଗୋଟିଏ ଅପରର ନିର୍ଣ୍ଣାୟକ ହୋଇଥାଏ ।

ତେଣୁ ଦ୍ୱାନ୍ଦ୍ୱିକ ପଦ୍ଧତିର ବିଚାର ଏହା ଯେ ପରିବେଷ୍ଟନୀରେ ଥିବା ଘଟଣାସମୂହ ଠୁଁ ପୃଥକ କରି କୌଣସି ଏକ ଘଟଣାକୁ, ତାକୁ ହିଁ ଏକାକୀ, ସ୍ୱତନ୍ତ୍ର ରୂପେ ବିଚାରକୁ ନେଇ ବୁଝି ହେବନି। ତାର କାରଣ ହେଲା, ପ୍ରକୃତିର ଯେ କୌଣସି କ୍ଷେତ୍ରରେ ଯେ କୌଣସି ଘଟଣା ଆମ ପାଇଁ ଅର୍ଥହୀନ ହୋଇଯାଇ ପାରେ ଯଦି ପରିବେଷ୍ଟନୀରେ ଥିବା ପରିସ୍ଥିତିଗୁଡ଼ିକ ସହ ତାର ସମ୍ବନ୍ଧସମୂହକୁ ବିଚାରକୁ ନିଆ ନଯାଏ । ସେଗୁଡ଼ିକ ସହ ସମସ୍ତ ସମ୍ବନ୍ଧ ତୁଟେଇ ତାହାର ବିଚାର କରି ହେବନି। ଏବଂ, ବିପରୀତ ଭାବରେ କହିଲେ, କୌଣସି ଏକ ଘଟଣାକୁ ବୁଝିହେବ, ତାର ବ୍ୟାଖ୍ୟା କରିହେବ, ଯଦି ପରିବେଷ୍ଟନୀରେ ଥିବା ଅନ୍ୟ ଘଟଣାବଳୀ ସହ ତାର ଅବିଚ୍ଛେଦ୍ୟ ସମ୍ବନ୍ଧକୁ ବିଚାରକୁ ନିଆଯାଏ, ଯଦି ତାହାର ଅବସ୍ଥିତି ପରିବେଷ୍ଟନୀରେ ଥିବା ଅନ୍ୟ ଘଟଣାବଳୀ ଉପରେ ନିର୍ଭରଶୀଳ ବୋଲି ବିଚାର କରାଯାଏ ।

ଖ) ଅଧିଭୌତିକବାଦ (metaphysics)ର ବିପରୀତ ଦୃଷ୍ଟିଭଙ୍ଗୀ ନେଇ ଡାୟାଲେକ୍‌ଟିକ୍ସ (dialectics) ବା ଦ୍ୱନ୍ଦ୍ୱତତ୍ତ୍ୱ ବିଚାର କରେ ଯେ ପ୍ରକୃତି ସୁପ୍ତ ନୁହେଁ, ଅଚଳ ନୁହେଁ, ସ୍ରୋତହୀନ ନୁହେଁ, ଅପରିବର୍ତ୍ତନୀୟ ନୁହେଁ, ବରଂ ତାହା ଅହରହ ଗତିଶୀଳ, ପରିବର୍ତ୍ତନଶୀଳ, ସଦା ପୁନଃସତେଜକ୍ଷମ, ବିକାଶକ୍ଷମ । ପ୍ରକୃତି କୋଳରେ ନିରନ୍ତରଭାବେ କିଛି ନା କିଛି ନୂଆର ଆବିର୍ଭାବ ହେଉଛି, ତାହାର ବିକାଶ ଘଟୁଛି, ଏବଂ କାହାର ନା କାହାର ଖଣ୍ଡ ବିଖଣ୍ଡନ ହେଉଛି, କିଏ ନା କିଏ ବିନାଶମୁଖୀ ହେଉଛି ଓ ତାହାର ବିନାଶ ଘଟୁଛି ।

ତେଣୁ ଦ୍ୱାନ୍ଦ୍ୱିକ ପଦ୍ଧତି ଏହା ଆବଶ୍ୟକ କରେ ଯେ ଘଟଣାବଳୀର ବିଚାର ବେଳେ କେବଳ ସେଗୁଡ଼ିକ ମଧ୍ୟରେ ଥିବା ପରସ୍ପର ସମ୍ବନ୍ଧ ଓ ନିର୍ଭରଶୀଳତା ଦୃଷ୍ଟିରୁ ବିଚାର କଲେ ଚଳିବନି, ସେଗୁଡ଼ିକର ଗତି, ସେଗୁଡ଼ିକର ପରିବର୍ତ୍ତନ, ସେଗୁଡ଼ିକର ବିକାଶ, ସେଗୁଡ଼ିକର ଆବିର୍ଭାବ ଓ ବିନାଶ ଦୃଷ୍ଟିରୁ ମଧ୍ୟ ବିଚାର କରିବାକୁ ହେବ ।

ଯାହା ଆବିର୍ଭାବ ହେଉଛି, ଯାହାର ବିକାଶ ହେଉଛି ତାକୁ ହିଁ କେବଳ ଅପରାଜେୟ ବୋଲି ଦ୍ୱାନ୍ଦ୍ୱିକ ପଦ୍ଧତି ବିଚାର କରିଥାଏ, ତେଣୁ ଯାହା କୌଣସି ଏକ ମୁହୂର୍ତ୍ତରେ

ଦେଖିବାକୁ ଦୃଢ଼, ଦୀର୍ଘସ୍ଥାୟୀ ଜଣା ପଡୁଥିଲେ ବି ଯାହାର ବିନାଶ ପ୍ରକ୍ରିୟା ଆରମ୍ଭ ହୋଇ ସାରିଲାଣି ତାକୁ ଦ୍ୱାନ୍ଦ୍ୱିକ ପଦ୍ଧତି ପ୍ରାଥମିକତା ଭିତ୍ତିରେ କୌଣସି ଗୁରୁତ୍ୱ ଦେଇ ନଥାଏ, ଦେଇଥାଏ ତାକୁ ଯାହାର ଆବିର୍ଭାବ ହେଉଛି, ବିକାଶ ହେଉଛି - ଯଦିଚ୍ଚ ସେଇ ମୁହୂର୍ତ୍ତରେ ତାହା ଦେଖିବାକୁ ଦୃଢ଼, ଦୀର୍ଘସ୍ଥାୟୀ ଜଣା ପଡୁ ନଥାଏ ।

ଏଙ୍ଗେଲ୍ସ୍ କହିଛନ୍ତି, "ସମଗ୍ର ପ୍ରକୃତିର ସ୍ଥିତି, କ୍ଷୁଦ୍ରାତିକ୍ଷୁଦ୍ର ବସ୍ତୁ ଠାରୁ ବୃହତ୍ତମ ପର୍ଯ୍ୟନ୍ତ, ବାଲି କଣା ଠାରୁ ସୂର୍ଯ୍ୟ ପର୍ଯ୍ୟନ୍ତ, ପ୍ରୋଟିଷ୍ଟା (protista - ପ୍ରାଥମିକ ଜୀବକୋଷ - *ସମ୍ପାଦକ*) ଠାରୁ ମଣିଷ ପର୍ଯ୍ୟନ୍ତ ସର୍ବ କ୍ଷେତ୍ରରେ ନିତ୍ୟ ନିରନ୍ତର ସ୍ଥିତିକୁ ଆସିବା ଓ ସ୍ଥିତିରୁ ଅପସରି ଯିବାରେ, ନିରବଚ୍ଛିନ୍ନ ଅବସ୍ଥାନ୍ତରରେ, ଅବିଶ୍ରାନ୍ତ ଗତି ଓ ପରିବର୍ତ୍ତନରେ ହିଁ, ବିଦ୍ୟମାନ ଥାଏ ।" (F. Engels, *Dialectics of Nature.*)

ତେଣୁ, ଏଙ୍ଗେଲ୍ସ୍ କହିଛନ୍ତି, ଦ୍ୱନ୍ଦ୍ୱତତ୍ତ୍ୱ "ବସ୍ତୁଗୁଡ଼ିକୁ ଓ ସେଗୁଡ଼ିକର ଅନୁଭୂତ ଛବିଗୁଡ଼ିକୁ ଅପରିହାର୍ଯ୍ୟ ଭାବେ ସେମାନଙ୍କ ମଧ୍ୟରେ ଥିବା ପରସ୍ପର ସମ୍ବନ୍ଧ, ସେମାନଙ୍କର ବିନ୍ୟାସ, ସେମାନଙ୍କର ଗତି, ସେମାନଙ୍କର ଉଭା ହେବା ଓ ଉଭେଇ ଯିବା ଦୃଷ୍ଟିରୁ ହିଁ ବିଚାରକୁ ନେଇଥାଏ ।" (F. Engels, *Anti-Duhring.*)

ଗ) ଅଧିଭୌତିକବାଦ (metaphysics) ର ବିପରୀତ ଦୃଷ୍ଟିଭଙ୍ଗୀ ନେଇ ଡାୟାଲେକ୍ଟିକ୍ସ (dialectics) ବା ଦ୍ୱନ୍ଦ୍ୱତତ୍ତ୍ୱ ବିକାଶର ଧାରାକୁ ପରିମାଣଗତ ପରିବର୍ତ୍ତନ ଗୁଣଗତ ପରିବର୍ତ୍ତନ ଆଡ଼କୁ ଯାଉ ନଥିବା କ୍ରମୋନ୍ନତିର ସରଳ ପ୍ରକ୍ରିୟା ବୋଲି ବିଚାର କରେ ନା, ବରଂ ତାହା ହେଉଛି ଏପରି ଏକ ବିକାଶ ପ୍ରକ୍ରିୟା ଯହିଁରେ ନଗନ୍ୟ, ଦୃଷ୍ଟିଗୋଚ଼ର ବହିର୍ଭୁତ ପରିମାଣଗତ ପରିବର୍ତ୍ତନ ଖୋଲା, ଭିତ୍ତିଗତ ପରିବର୍ତ୍ତନ ଆଡ଼କୁ ଯାଇଥାଏ, ଗୁଣଗତ ପରିବର୍ତ୍ତନ ଆଡ଼କୁ ଯାଇଥାଏ । - ଏପରି ଏକ ବିକାଶ ପ୍ରକ୍ରିୟା ଯହିଁରେ ପରିମାଣଗତ ପରିବର୍ତ୍ତନ କ୍ରମାଗତଭାବେ ସଙ୍ଘଠିତ ନହୋଇ, ଗୋଟିଏ ସ୍ଥିତିରୁ ଅନ୍ୟ ଏକ ସ୍ଥିତିକୁ ଏକ ଲମ୍ଫର ଆକାର ନେଇ ଦ୍ରୁତ ବେଗରେ ହଠାତ୍ ସଙ୍ଘଠିତ ହୋଇଥାଏ । ତାହା ଆକସ୍ମିକ ଭାବେ ଘଟି ନଥାଏ, ବରଂ ଦୃଷ୍ଟିଗୋଚ଼ର ବହିର୍ଭୁତ, ଲଗାତର ପରିମାଣଗତ ପରିବର୍ତ୍ତନର ସ୍ୱାଭାବିକ ପରିଣତି ରୂପେ ଘଟି ଥାଏ ।

ଏହି କାରଣରୁ ଦ୍ୱନ୍ଦ୍ୱାତ୍ମକ ତତ୍ତ୍ୱ ବିଚାର କରେ ଯେ ବିକାଶର ପ୍ରକ୍ରିୟାକୁ ଏକ ବୃତ୍ତାକାର ଗତି ବୋଲି ବିଚାରିବା ଉଚିତ ନୁହେଁ, ଯାହା ଏଥି ପୂର୍ବରୁ ଘଟି ସାରିଛି ତାହାର କେବଳ ପୁନରାବୃତ୍ତି ବୋଲି ଭାବିବା ଉଚିତ ନୁହେଁ, ବରଂ ତାହାର ଗତି ଆଗକୁ, ଉର୍ଦ୍ଧ୍ୱକୁ ବୋଲି ବୁଝିବାକୁ ହେବ, ପୁରାତନ ଗୁଣାତ୍ମକ ଅବସ୍ଥାରୁ ନୂତନ ଗୁଣାତ୍ମକ ଅବସ୍ଥାକୁ ପରିବର୍ତ୍ତନ, ସରଳତାରୁ ଜଟିଳତାକୁ, ନିମ୍ନତର ଅବସ୍ଥାରୁ ଉଚ୍ଚତର ଅବସ୍ଥାକୁ ବିକାଶ ରୂପେ ବୁଝିବାକୁ ହେବ ।

ଏଙ୍ଗେଲ୍‌ସ୍ କହିଛନ୍ତି, ''ପ୍ରକୃତି ହେଉଛି ଦ୍ୱନ୍ଦ୍ୱତତ୍ତ୍ୱର ପରୀକ୍ଷାଗାର, ଏବଂ ଆଧୁନିକ ପ୍ରକୃତି ବିଜ୍ଞାନ ସମ୍ପର୍କରେ ଏହା କହିବା ନିହାତି ଆବଶ୍ୟକ ଯେ ତାହା ଦିନକୁ ଦିନ ଅଧିକରୁ ଅଧିକ ନିହାତି ମୂଲ୍ୟବାନ ତଥ୍ୟ ପରୀକ୍ଷା ପାଇଁ ଯୋଗାଉଛି ଏବଂ ଏହିଭାବେ ଏହା ପ୍ରମାଣ କରୁଛି ଯେ ସମସ୍ତ ପ୍ରକାର ବିଶ୍ଳେଷଣର ଶେଷରେ ଆମେ ଯାହା ପାଉ ତାହା ହେଲା - ପ୍ରକୃତିର ଧାରା ଦ୍ୱନ୍ଦ୍ୱାତ୍ମକ ଅଟେ ଏବଂ ଅଧିଭୌତିକ ନୁହେଁ, ଏହାର ଗତିର ଆକାର - ସେଇ ଏକ ଓ ଅଭିନ୍ନ ତଥା ବାରମ୍ବାର ପୁନରାବୃତ୍ତ - ବୃତ୍ତାକାର ନୁହେଁ, କିନ୍ତୁ ବାସ୍ତବ ଘଟଣାବଳୀ ମଧ୍ୟ ଦେଇ ଗତି କରିଥାଏ। ଏଠି ଡାରଓ୍ୱିନ୍‌ଙ୍କୁ ମୁଖ୍ୟତଃ ଉଲ୍ଲେଖ କରିବା ଆବଶ୍ୟକ, ଯିଏ ଆଜିର ଏହି ଜୀବଜଗତ - ଉଦ୍ଭିଦ ଓ ପ୍ରାଣୀ, ତଥା ପରିଶେଷରେ ମଣିଷ ମଧ୍ୟ, ସମସ୍ତେ - କୋଟି କୋଟି ବର୍ଷଧରି ଚାଲୁ ରହିଥିବା ବିକାଶ ପ୍ରକ୍ରିୟାର ପରିଣତି ବୋଲି ପ୍ରମାଣ କରି ପ୍ରକୃତି ସମ୍ପର୍କୀତ ଅଧିଭୌତିକ ଧାରଣାକୁ ପ୍ରଚଣ୍ଡ ଧକ୍କା ଦେଇଛନ୍ତି ।'' *(ପୂର୍ବୋକ୍ତ ଗ୍ରନ୍ଥରେ)*

ଦ୍ୱନ୍ଦ୍ୱାତ୍ମକ ବିକାଶକୁ ପରିମାଣାତ୍ମକ ପରିବର୍ତ୍ତନରୁ ଗୁଣାତ୍ମକ ପରିବର୍ତ୍ତନକୁ ରୂପାନ୍ତର ବୋଲି ବର୍ଣ୍ଣନା କରି ଏଙ୍ଗେଲ୍‌ସ୍ କହିଛନ୍ତି,

''ପଦାର୍ଥ ବିଜ୍ଞାନ (physics) ରେ ... ଗୋଟିଏ ବସ୍ତୁରେ ଅନ୍ତର୍ନିହିତ ଥିବା ଅବା ତାକୁ ବାହାରୁ ପ୍ରଦାନ କରା ଯାଇଥିବା ଯେକୌଣସି ଆକାରର ଗତିର ପରିମାଣାତ୍ମକ ପରିବର୍ତ୍ତନର ଫଳ ସ୍ୱରୂପ ପ୍ରତ୍ୟେକଟା ପରିବର୍ତ୍ତନ ପରିମାଣରୁ ଗୁଣକୁ ରୂପାନ୍ତର ଅଟେ। ଉଦାହରଣ ସ୍ୱରୂପ, ଜଳର ତାପମାତ୍ରା ତାର ତରଳ ଅବସ୍ଥା ଉପରେ ପ୍ରଥମେ ପ୍ରଥମେ କୌଣସି ଭାବର ପ୍ରଭାବ ପକାଇ ନଥାଏ, କିନ୍ତୁ ଯେମିତି ଯେମିତି ତରଳ ଜଳର ତାପମାତ୍ରା ବଢ଼ିବାରେ ବା କମିବାରେ ଲାଗିବ, ଏପରି ଏକ ମୁହୂର୍ତ୍ତ ଆସି ପହଞ୍ଚିବ ଯେତେବେଳେ ତାର ସଂଯୋଗ ପ୍ରବଣତାର ଏହି ସ୍ଥିତି ବଦ୍‌ଲି ଯିବ ଏବଂ ଜଳ ଗୋଟିଏ କ୍ଷେତ୍ରରେ ବାଷ୍ପକୁ ତ ଅନ୍ୟ କ୍ଷେତ୍ରରେ ବରଫକୁ ପରିବର୍ତ୍ତିତ ହୋଇଯିବ। ... ଏକ ପ୍ଲାଟିନମ୍ ତାରକୁ ପ୍ରଜ୍ୱଳିତ କରିବା ପାଇଁ ଏକ ନିର୍ଦ୍ଦିଷ୍ଟ ପରିମାଣର ସର୍ବନିମ୍ନ ବିଦ୍ୟୁତ୍ ଶକ୍ତି ଆବଶ୍ୟକ। ତରଳିବା ପାଇଁ ପ୍ରତ୍ୟେକ ଧାତୁର ଏକ ନିର୍ଦ୍ଦିଷ୍ଟ ତାପମାତ୍ରା ରହିଛି । ଆମ ହାତପାଆନ୍ତାରେ ଥିବା ସାଧନ ସାହାଯ୍ୟରେ ଆମେ ଯଦି ଆବଶ୍ୟକୀୟ ଉତ୍ତାପ ଯୋଗେଇବା ପାଇଁ ସକ୍ଷମ ହେଉ ତେବେ ପ୍ରଦତ୍ତ ଚାପ ଦ୍ୱାରା ପ୍ରଭାବିତ ଥିବା ପ୍ରତ୍ୟେକ ତରଳ ପଦାର୍ଥର ଏକ ନିଜସ୍ୱ ନିର୍ଦ୍ଦିଷ୍ଟ ଘନୀଭୂତାଙ୍କ ବା ହିମାଙ୍କ (freezing point) ଓ ଏକ ନିର୍ଦ୍ଦିଷ୍ଟ ସ୍ଫୁଟନାଙ୍କ (boiling point) ରହିଛି। ପରିଶେଷରେ, ପ୍ରତ୍ୟେକ ବାଷ୍ପର ନିଜସ୍ୱ ଏକ ସଙ୍କଟ ବିନ୍ଦୁ (critical point) ରହିଛି ଯେଉଁଠି ଯଥାର୍ଥ ଚାପ ଓ ଶୀତଳୀକରଣ ଦ୍ୱାରା ତାକୁ ତରଳ ଅବସ୍ଥାକୁ ପରିବର୍ତ୍ତିତ କରିହେବ । ... ପଦାର୍ଥ ବିଜ୍ଞାନରେ ଯେଉଁ ବିନ୍ଦୁ ଅଟଳ (constant) ରୂପେ ପରିଚିତ (ସେହି ବିନ୍ଦୁ ଯେଉଁଠି ଗୋଟିଏ ଅବସ୍ଥା ଅନ୍ୟ ଏକ ଅବସ୍ଥାକୁ ରୂପାନ୍ତରିତ ହୋଇଥାଏ - ସଂପାଦକ), ତାହା ହେଉଛି ସେହି ଅବଚ୍ଛେଦକ ବିନ୍ଦୁ (nodal point) ର ନାମ ଯେଉଁଠି ପରିମାଣାତ୍ମକ ପରିବର୍ତ୍ତନ, ଗତିର ବୃଦ୍ଧି ଅବା ହ୍ରାସ, ଦ୍ୱାରା ଗୋଟିଏ ଦତ୍ତ ବସ୍ତୁର ଗୁଣାତ୍ମକ

ପରିବର୍ତ୍ତନ ଘଟିଥାଏ, ଏବଂ ଯେଉଁଠି, ପରିଣାମ ସ୍ୱରୂପ, ପରିମାଣ ଗୁଣକୁ ରୂପାନ୍ତରିତ ହୋଇଥାଏ ।" (*Dialectics of Nature.*)

ରସାୟନ ବିଜ୍ଞାନକୁ ଯାଇ, ଏଙ୍ଗେଲ୍ସ ଆହୁରି କହୁଛନ୍ତି,

"ପରିମାଣାତ୍ମକ ସମିଶ୍ରଣରେ ପରିବର୍ତ୍ତନର ଫଳ ସ୍ୱରୂପ ବସ୍ତୁଗୁଡ଼ିକରେ ଗୁଣାତ୍ମକ ପରିବର୍ତ୍ତନ ଘଟୁଥିବା କଥା ଯେଉଁ ଶାସ୍ତ୍ରର ବିଷୟବସ୍ତୁ ତାକୁ ରସାୟନ ବିଜ୍ଞାନ (chemistry) କୁହାଯାଇ ପାରେ । ଏହି କଥା ହେଗେଲଙ୍କୁ ଜଣାଥିଲା ... ଅମ୍ଳଜାନ କଥା ବିଚାର କରାଯାଉ: ଗୋଟିଏ ଅଣୁରେ ଗତାନୁଗତିକ ଦୁଇଟି ପରମାଣୁ ରହିବା ପରିବର୍ତ୍ତେ ଯଦି ତିନୋଟି ପରମାଣୁ ଥାଏ, ତେବେ ଆମେ ପାଉ ଓଜୋନ୍, ଏପରି ଏକ ବସ୍ତୁ ଯାହା ଗନ୍ଧ ଓ ପ୍ରତିକ୍ରିୟା ଦୃଷ୍ଟିରୁ ସାଧାରଣ ଅମ୍ଳଜାନ ଠାରୁ ନିଶ୍ଚିତରୂପେ ଭିନ୍ନ। ଆଉ ସେହି ବିଭିନ୍ନ ଅନୁପାତ କଥା କଅଣ କହିବା, ଯେଉଁ ଅନୁପାତରେ ଯବକ୍ଷାରଜାନ ଓ ଗନ୍ଧକ ସହ ଅମ୍ଳଜାନ ଯୌଗିକ ବନ୍ଧନରେ ବାନ୍ଧି ହୋଇଥାଏ, ଏବଂ ତହିଁରୁ ପ୍ରତ୍ୟେକଟା ଏପରି ଏକ ବସ୍ତୁକୁ ଉତ୍ପାଦନ କରେ ଯାହା ଅନ୍ୟାନ୍ୟ ସମସ୍ତ ବସ୍ତୁ ଠୁଁ ଗୁଣାତ୍ମକ ଭାବେ ଭିନ୍ନ !" *(ପୂର୍ବୋକ୍ତ ଗ୍ରନ୍ଥରେ)*

ତେଣୁ ଯେଉଁ ଡୁହରିଙ୍ଗ୍ ହେଗେଲ୍‌ଙ୍କୁ ଯଥାଯୋଗ୍ୟ ଭର୍ତ୍ସନା କରିଛନ୍ତି, ଅଥଚ ତାଙ୍କର ହିଁ ବିଖ୍ୟାତ ପ୍ରତତ୍ତ୍ୱ (ପ୍ରସ୍ତାବିତ ତତ୍ତ୍ୱ - thesis) ଟିକୁ - ଯାହା ଅଚେତନ, ଜଡ଼ ଜଗତରୁ ସଚେତନ ଜଗତକୁ, ଅଜୈବ ପଦାର୍ଥର ରାଜ୍ୟରୁ ଜୈବୀକ ଜୀବନର ରାଜ୍ୟକୁ ହେଉଥିବା ପରିବର୍ତ୍ତନକୁ ଏକ ନୂଆ ସ୍ଥିତିକୁ ଲମ୍ଫ ବୋଲି କହେ, ତାକୁ - ଲୁଚାଇପାରେ ଆପଣାର କରି ବ୍ୟବହାର କରିଛନ୍ତି, ଏଙ୍ଗେଲ୍ସ ଶେଷରେ ତାଙ୍କୁ ହିଁ ସମାଲୋଚନା କରି କହିଛନ୍ତି,

"ସଠିକ୍ ଭାବରେ ଏହାହିଁ ହେଉଛି ମାପ ସମ୍ପର୍କୀତ ହେଗେଲୀୟ ଅବଚ୍ଛେଦକ ରେଖା (nodal line) ଯହିଁରେ କୌଣସି ଏକ ନିର୍ଦ୍ଦିଷ୍ଟ ଅବଚ୍ଛେଦକ ବିନ୍ଦୁ (nodal point) ଠାରେ ନିଛକ୍ ପରିମାଣାତ୍ମକ ବୃଦ୍ଧି ବା ହ୍ରାସ ଏକ *ଗୁଣାତ୍ମକ ଲମ୍ଫ*ରେ ପରିଣତ ହୁଏ। ଉଦାହରଣ ସ୍ୱରୂପ, ଜଳ - ଯାହାକୁ ଗରମ ବା ଥଣ୍ଡା କରା ଯାଇଥାଏ । ତାର ସ୍ଫୁଟନାଙ୍କ (boiling point) ଓ ଘନୀଭୁତାଙ୍କ ବା ହିମାଙ୍କ (freezing point) ହେଉଛି ଅବଚ୍ଛେଦକ ଯେଉଁଠି - ସାଧାରଣ ଚାପର ପରିସ୍ଥିତିରେ - ସମିଶ୍ରଣର ଏକ ନୂତନ ସ୍ଥିତିକୁ ଲମ୍ଫ ଦେବା କଥା ଘଟିଥାଏ, ଏବଂ ଯେଉଁଠି ପରିଣତି ସ୍ୱରୂପ ପରିମାଣ ଗୁଣକୁ ରୂପାନ୍ତରିତ ହୋଇଥାଏ ।" (F. Engels, *Anti-Duhring.*)

ଘ) ଅଧିଭୌତିକବାଦ (metaphysics)ର ବିପରୀତ ଦୃଷ୍ଟିଭଙ୍ଗୀ ନେଇ ଡାୟାଲେକ୍‌ଟିକ୍ସ (dialectics) ବା ଦ୍ୱନ୍ଦ୍ୱତତ୍ତ୍ୱ ବିଚାର କରେ ଯେ ପ୍ରକୃତିର ସମସ୍ତ ବସ୍ତୁ ଓ ଘଟଣାପ୍ରବାହରେ(phenomena) ଅନ୍ତର୍ନିହିତ ବିରୋଧ ରହିଛି, କାରଣ ସେମାନଙ୍କର ସମସ୍ତଙ୍କର ନକାରାତ୍ମକ ଓ ସକାରାତ୍ମକ ଦିଗ ରହିଛି, ଅତୀତ ଓ ଭବିଷ୍ୟତ

ରହିଛି, କେତେକ ବିନାଶ ଆଡ଼କୁ ମୁହାଁଇଛନ୍ତି ତ କେତେକ ବିକାଶ ପଥରେ ଅଗ୍ରସର ହେଉଛନ୍ତି । ଏବଂ ଏହା ମଧ୍ୟ ବିଚାର କରେ ଯେ ଏହି ଦୁଇ ବିରୋଧୀ ମଧ୍ୟରେ ସଂଘର୍ଷ, ପୁରୁଣା ଓ ନୂଆ ମଧ୍ୟରେ ସଂଘର୍ଷ, ମରୁଥିବା ଓ ଜନ୍ମ ହେଉଥିବା ମଧ୍ୟରେ ସଂଘର୍ଷ, ବିନାଶମୁଖୀ ଓ ବିକାଶପଥୀ ମଧ୍ୟରେ ସଂଘର୍ଷକୁ ନେଇ ହିଁ ବିକାଶ ପ୍ରକ୍ରିୟାର ଅନ୍ତର୍ନିହିତ ବିଷୟବସ୍ତୁ ଗଠିତ, ପରିମାଣାତ୍ମକ ପରିବର୍ତ୍ତନର ଗୁଣାତ୍ମକ ପରିବର୍ତ୍ତନକୁ ରୂପାନ୍ତରର ବିଷୟବସ୍ତୁ ଗଠିତ ।

ତେଣୁ ଦ୍ୱନ୍ଦ୍ୱାତ୍ମକ ତତ୍ତ୍ୱ ବିଚାର କରେ ଯେ ନିମ୍ନତର ସ୍ତରରୁ ଉର୍ଦ୍ଧ୍ୱତର ସ୍ତରକୁ ଘଟଣାପ୍ରବାହର ବିକାଶର ପ୍ରକ୍ରିୟା ଏକ ସୁସଙ୍ଗତ ରୂପରେ ପ୍ରକଟିତ ହୋଇ ନଥାଏ, ବରଂ ବସ୍ତୁ ଓ ଘଟଣାବଳୀର ଅନ୍ତର୍ନିହିତ ବିରୋଧ ରୂପେ, ଏହି ବିରୋଧର ଭିତ୍ତିରେ କାର୍ଯ୍ୟ କରୁଥିବା ବିପରୀତ ଝୁଙ୍କର "ସଙ୍ଘର୍ଷ" ରୂପେ ପ୍ରକଟିତ ହୋଇଥାଏ ।

> "ଏହାର ଯଥାର୍ଥ ଅର୍ଥରେ," ଲେନିନ୍ କହିଛନ୍ତି, "ଦ୍ୱନ୍ଦ୍ୱତତ୍ତ୍ୱ ହେଉଛି *ବସ୍ତୁଗୁଡ଼ିକର ପ୍ରକୃତ ସାରମର୍ମ ମଧ୍ୟରେ ଥିବା* ବିରୋଧର ଅଧ୍ୟୟନ।" (Lenin, *Philosophical Notebooks,* Russ. ed., p. 263.)

ଆହୁରି କହିଛନ୍ତି:

> "ବିପରୀତ ମଧ୍ୟରେ 'ସଙ୍ଘର୍ଷ' ହିଁ ବିକାଶ।" (Lenin, *Collected Works,* Russ. ed., Vol.XIII, p. 301.)

ସଂକ୍ଷେପରେ କହିଲେ, ମାର୍କ୍ସବାଦୀ ଦ୍ୱନ୍ଦ୍ୱାତ୍ମକ ପଦ୍ଧତିର ମୁଖ୍ୟ ବୈଶିଷ୍ଟ୍ୟମାନ ହିଁ ଏପରି ।

ସାମାଜିକ ଜୀବନ ତଥା ସମାଜର ଇତିହାସ ଅଧ୍ୟୟନ ପାଇଁ ଦ୍ୱନ୍ଦ୍ୱାତ୍ମକ ପଦ୍ଧତିର ନୀତିଗୁଡ଼ିକର ସମ୍ପ୍ରସାରଣ କେତେ ଜରୁରି, ଏବଂ ସମାଜର ଇତିହାସ ଓ ସର୍ବହରା ଶ୍ରେଣୀର ପାର୍ଟିର ପ୍ରୟୋଗାତ୍ମକ କାର୍ଯ୍ୟକଳାପ କ୍ଷେତ୍ରରେ ଏହି ନୀତିଗୁଡ଼ିକର ପ୍ରୟୋଗ କେତେ ଜରୁରି ତାହା ସହଜରେ ବୁଝି ହେବ ।

ଯଦି ସଂସାରରେ କୌଣସି ପୃଥକ, ପରସ୍ପର ଠାରୁ ବିଚ୍ଛିନ୍ନ ଘଟଣାବଳୀ (phenomena) ନାହିଁ, ଯଦି ସମସ୍ତ ଘଟଣାବଳୀ ପରସ୍ପର ସହ ସମ୍ପର୍କୀତ ଓ ପରସ୍ପର ଉପରେ ନିର୍ଭରଶୀଳ, ତେବେ ଏହା ସ୍ପଷ୍ଟ ଯେ ଇତିହାସରେ ଦେଖା ଦେଇଥିବା ପ୍ରତ୍ୟେକ ସାମାଜିକ ବ୍ୟବସ୍ଥା ଓ ପ୍ରତ୍ୟେକ ସାମାଜିକ ଆନ୍ଦୋଳନକୁ "ଶାଶ୍ୱତ ନ୍ୟାୟ"(eternal justice) ଅବା ଅନ୍ୟ କୌଣସି ପୂର୍ବକଳ୍ପିତ ଧାରଣା ଦୃଷ୍ଟିରୁ, ଯେମିତି ଅବିରଳ ଭାବେ ଐତିହାସିକମାନେ କରିଥାନ୍ତି ସେମିତି, ମୂଲ୍ୟାୟନ ନକରି, ପରିସ୍ଥିତି ଦୃଷ୍ଟିରୁ ମୂଲ୍ୟାୟନ କରିବାକୁ ହେବ - କେଉଁ ପରିସ୍ଥିତିଗୁଡ଼ିକର ଉପସ୍ଥିତି ଯୋଗୁଁ ଏକ ବିଶେଷ ଧରଣର ସମାଜ ବ୍ୟବସ୍ଥା ଦେଖା ଦେଲା ଅବା ଏକ ବିଶେଷ ଧରଣର ସାମାଜିକ ଆନ୍ଦୋଳନ

ମୁଣ୍ଡ ଟେକିଲା ଓ ଯାହା ସହିତ ସେଗୁଡ଼ିକର ସମ୍ପର୍କ ରହିଛି ସେହି ଦୃଷ୍ଟିରୁ ହିଁ ମୂଲ୍ୟାୟନ କରିବାକୁ ହେବ ।

ଆଧୁନିକ ପରିସ୍ଥିତିରେ ଦାସ ବ୍ୟବସ୍ଥା ନିରର୍ଥକ, ନିର୍ବୋଧ ତଥା ଅସ୍ୱାଭାବିକ ମନେ ହେବ । କିନ୍ତୁ ସେହି ପରିସ୍ଥିତିରେ ଯେଉଁ ପରିସ୍ଥିତିରେ ଆଦିମ ସାମ୍ୟବାଦୀ ବ୍ୟବସ୍ଥା ଖଣ୍ଡ ବିଖଣ୍ଡିତ ହେଉଥିଲା, ବିନାଶମୂଖୀ ଥିଲା, ଦାସ ବ୍ୟବସ୍ଥା ଏକ ବୋଧଗମ୍ୟ ଓ ସ୍ୱାଭାବିକ ଘଟଣା ଥିଲା, କାରଣ ତାହା ଆଦିମ ସାମ୍ୟବାଦୀ ବ୍ୟବସ୍ଥାକୁ ପଛରେ ପକେଇ ଅଗ୍ରଗତିର ପ୍ରତିନିଧିତ୍ୱ କରୁଥିଲା ।

୧୯୦୫ର ଋଷିଆ କଥା ନିଆଯାଉ । ସେତେବେଳେ ଯେତେବେଳେ ଜାର୍‌ଙ୍କ ରାଜ୍ୟ ତଥା ବୁର୍ଜୁଆ ସମାଜ ଥିଲା, ବୁର୍ଜୁଆ-ଗଣତାନ୍ତ୍ରିକ ସାଧାରଣତନ୍ତ୍ର ପାଇଁ ଯେଉଁ ଦାବୀ ହେଉଥିଲା ତାହା ଏକ ବୋଧଗମ୍ୟ, ଯଥାର୍ଥ ଓ ବୈପ୍ଳବିକ ଦାବୀ ଥିଲା, କାରଣ ସେତେବେଳେ ବୁର୍ଜୁଆ ସାଧାରଣତନ୍ତ୍ରର ଅର୍ଥ ପ୍ରଗତି ପଥରେ ପାଦେ ଆଗକୁ ବୋଲି ବିଚାର କରାଯାଉଥିଲା । କିନ୍ତୁ ଆଜି, ସୋଭିୟେତ୍ ୟୁନିଅନ୍‌ର ପରିସ୍ଥିତିରେ, ବୁର୍ଜୁଆ-ଗଣତାନ୍ତ୍ରିକ ସାଧାରଣତନ୍ତ୍ର ପାଇଁ ଦାବୀ ହେବ ଏକ ଅର୍ଥହୀନ ଓ ପ୍ରତି-ବିପ୍ଳବୀ ଦାବୀ, କାରଣ ସୋଭିୟେତ୍ ୟୁନିଅନ୍‌ର ତୁଳନାରେ ବୁର୍ଜୁଆ ସାଧାରଣତନ୍ତ୍ର ହେବ ଏକ ପଶ୍ଚାତ୍‌ଗାମୀ ପଦକ୍ଷେପ ।

ପ୍ରତ୍ୟେକ କଥା ସ୍ଥାନ, କାଳ, ପରିସ୍ଥିତି ଉପରେ ନିର୍ଭର କରେ ।

ଏହା ସ୍ପଷ୍ଟ ଯେ ସାମାଜିକ ଘଟଣାପ୍ରବାହ ପ୍ରତି ଏହି ଭଳିଆ *ଐତିହାସିକ* ଦୃଷ୍ଟିଭଙ୍ଗୀ ଯଦି ନରହେ, ତେବେ ଇତିହାସ ବିଜ୍ଞାନର ସ୍ଥିତି ଓ ବିକାଶ ଅସମ୍ଭବ, କାରଣ କେବଳ ଏହି ଭଳିଆ ଦୃଷ୍ଟିଭଙ୍ଗୀ ହିଁ ଇତିହାସ ବିଜ୍ଞାନକୁ ଆକସ୍ମିକ ଘଟଣାବଳୀର ଅଳିଆ ଗଦା ଏବଂ ଅତ୍ୟନ୍ତ ହାସ୍ୟାସ୍ପଦ ଭୁଲଭ୍ରାନ୍ତିର ସ୍ତୁପ ହେବାରୁ ରକ୍ଷା କରିପାରିବ ।

ପୁଣି, ସଂସାରଟା ଯଦି ଅହରହ ଗତି ଓ ବିକାଶର ସ୍ଥିତିରେ, ପୁରାତନର ମୃତ୍ୟୁ ଓ ନୂତନର ଅଭିବୃଦ୍ଧି ଯଦି ବିକାଶ ପ୍ରକ୍ରିୟାର ନିୟମ, ତେବେ ଏହା ସ୍ପଷ୍ଟ ଯେ କୌଣସି ପ୍ରକାରର "ଅପରିବର୍ତ୍ତନୀୟ" ସମାଜ ବ୍ୟବସ୍ଥା ରହି ପାରେନା, ବ୍ୟକ୍ତିଗତ ସମ୍ପତ୍ତି ଓ ଶୋଷଣର କୌଣସି "ଚୀରନ୍ତନ ନିୟମ" ରହି ପାରେନା, କୃଷକକୁ ଜମିଦାରର, ଶ୍ରମିକକୁ ପୁଞ୍ଜିପତିର ଅଧୀନସ୍ଥ କରି ରଖିବା ପାଇଁ କୌଣସି "ଶାଶ୍ୱତ ଚିନ୍ତାଧାରା" ରହି ପାରେନା ।

ତେଣୁ, ଯେମିତି ଦିନେ ସାମନ୍ତବାଦୀ ବ୍ୟବସ୍ଥାର ସ୍ଥାନ ପୁଞ୍ଜିବାଦୀ ବ୍ୟବସ୍ଥା ନେଇଥିଲା, ଠିକ୍ ସେମିତି ପୁଞ୍ଜିବାଦୀ ବ୍ୟବସ୍ଥାର ସ୍ଥାନ ସମାଜବାଦୀ ବ୍ୟବସ୍ଥା ନେଇ ପାରେ ।

ତେଣୁ, ଆମର ଜିଜ୍ଞାସାଝୁଙ୍କ (orientation) ସମାଜର ସେହି ଶ୍ରେଣୀଗୁଡ଼ିକୁ ଭିତ୍ତି କରି ହେବା ଉଚିତ ନୁହେଁ, ଯାହାର - ବର୍ତ୍ତମାନ ଯେତେ ବଡ଼ ପ୍ରଭୁତ୍ୱକାରୀ ଶକ୍ତି ହୋଇଥିଲେ ମଧ୍ୟ - ଅଭିବୃଦ୍ଧି ହେଉନାହିଁ, ବିକାଶ ଘଟୁନାହିଁ, ଅଥଚ ବର୍ତ୍ତମାନ

ପ୍ରଭୁତ୍ୱକାରୀ ଶକ୍ତି ନ ହୋଇଥିଲେ ମଧ୍ୟ, ଯାହାର ଅଭିବୃଦ୍ଧି ହେଉଛି, ବିକାଶ ଘଟୁଛି ଏବଂ ଯାହାର ସମ୍ମୁଖରେ ଏକ ଭବିଷ୍ୟତ ଅଛି, ସମାଜର ସେହି ଶ୍ରେଣୀଗୁଡ଼ିକ ହିଁ ଆମର ଜିଜ୍ଞାସାଝୁଙ୍କ (orientation) ର ଭିତ୍ତି ହେବା ଉଚିତ ।

ଗତ (ଉନବିଂଶ) ଶତାବ୍ଦୀର ଅଶି ଦଶକରେ, ମାର୍କ୍ସବାଦୀ ଓ ନାରୋଦନିକ୍ (ଲୋକସପକ୍ଷବାଦୀ)ମାନଙ୍କ ମଧ୍ୟରେ ଚାଲିଥିବା ସଂଘର୍ଷ କାଳରେ ଋଷିଆରେ ବ୍ୟକ୍ତିଗତ ଚାଷୀମାନେ ଜନସଂଖ୍ୟାର ବିପୁଳ ସଂଖ୍ୟାଗରିଷ୍ଠ ଅଂଶ ହୋଇଥିବା ବେଳେ ସର୍ବହରାମାନେ ସେହି ଜନସଂଖ୍ୟାର ଏକ ନଗଣ୍ୟ ସଂଖ୍ୟାଲଘୁ ଗୋଷ୍ଠୀ ଥିଲେ । କିନ୍ତୁ ସର୍ବହରା ଶ୍ରେଣୀଟି ଏକ ଶ୍ରେଣୀ ହିସାବରେ ବିକାଶଲାଭ କରୁଥିବା ବେଳେ ଚାଷୀମାନେ ଏକ ଶ୍ରେଣୀ ହିସାବରେ ଭାଙ୍ଗିଦୃଜି ଯାଉଥିଲେ । ସର୍ବହରା ଶ୍ରେଣୀଟି ଏକ ଶ୍ରେଣୀ ହିସାବରେ ବିକାଶଲାଭ କରୁଥିବା ଯୋଗୁଁରୁ ହିଁ ମାର୍କ୍ସବାଦୀମାନେ ସେମାନଙ୍କର ଜିଜ୍ଞାସାଝୁଙ୍କ (orientation) ସର୍ବହରା ଶ୍ରେଣୀ ଉପରେ ହିଁ ଜାରି ରଖିଥିଲେ । ଏବଂ ସେମାନେ ତାହା କରି ଭୁଲ କରି ନଥିଲେ, କାରଣ, ଆମେ ଜାଣିଛେ ଯେ, ପରବର୍ତ୍ତୀ କାଳରେ ସର୍ବହରା ଶ୍ରେଣୀ ଏକ ନଗଣ୍ୟ ଶକ୍ତିରୁ ଏକ ପ୍ରମୁଖ ଐତିହାସିକ ଓ ରାଜନୈତିକ ଶକ୍ତିକୁ ବିକଶିତ ହୋଇଥିଲା ।

ତେଣୁ, ନୀତିଗତ ଭୁଲ ନକରିବା ପାଇଁ, ଆମକୁ ଆଗକୁ ଦେଖିବାକୁ ହେବ, ପଛକୁ ନୁହେଁ ।

ପୁଣି, ଯଦି ଧୀର ପରିମାଣାତ୍ମକ ପରିବର୍ତ୍ତନଗୁଡ଼ିକର ଦ୍ରୁତ, ଅପ୍ରତ୍ୟାଶିତ ଗୁଣାତ୍ମକ ପରିବର୍ତ୍ତନକୁ ରୂପାନ୍ତର ହେବାଟା ହିଁ ହେଉଛି ବିକାଶ ପ୍ରକ୍ରିୟାର ଏକ ନିୟମ, ତେବେ ଏହା ସ୍ପଷ୍ଟ ଯେ ନିର୍ଯ୍ୟାତିତ ଶ୍ରେଣୀମାନେ କରିଥିବା ବିପ୍ଳବଗୁଡ଼ିକ ନିହାତି ସ୍ୱାଭାବିକ ଓ ଅପରିହାର୍ଯ୍ୟ ଘଟଣା ଥିଲା ।

ତେଣୁ, ପୁଞ୍ଜିବାଦରୁ ସମାଜବାଦକୁ ଅବସ୍ଥାନ୍ତର ତଥା ପୁଞ୍ଜିବାଦର ଜୁଆଳିରୁ ଶ୍ରମିକ ଶ୍ରେଣୀର ମୁକ୍ତି ଧୀର, ମନ୍ଥର ପରିବର୍ତ୍ତନ ଦ୍ୱାରା ସମ୍ଭବ ନୁହେଁ, ସଂସ୍କାର ଦ୍ୱାରା ସମ୍ଭବ ନୁହେଁ, ଅଥଚ ତାହା କେବଳ ପୁଞ୍ଜିବାଦୀ ବ୍ୟବସ୍ଥାର ଗୁଣାତ୍ମକ ପରିବର୍ତ୍ତନ ଦ୍ୱାରା ସମ୍ଭବ, ବିପ୍ଳବ ଦ୍ୱାରା ସମ୍ଭବ ।

ତେଣୁ, ନୀତିଗତ ଭୁଲ ନକରିବା ପାଇଁ, ଜଣକୁ ବିପ୍ଳବୀ ହେବାକୁ ହେବ, ସଂସ୍କାରବାଦୀ ନୁହେଁ ।

ପୁଣି, ଅନ୍ତର୍ନିହିତ ଦ୍ୱନ୍ଦ୍ୱଗୁଡ଼ିକୁ ପ୍ରକାଶ କରିବା ବାଟ ଦେଇ, ଏହି ଦ୍ୱନ୍ଦ୍ୱଗୁଡ଼ିକର ଭିତ୍ତିରେ ବିରୋଧୀ ଶକ୍ତିଗୁଡ଼ିକ ମଧ୍ୟରେ ହେଉଥିବା ସଂଘର୍ଷ ଜରିଆରେ ତଥା ଏହି ଦ୍ୱନ୍ଦ୍ୱଗୁଡ଼ିକର ମୀମାଂସା ଭିତ୍ତିରେ ହିଁ, ଯଦି ବିକାଶ ପ୍ରକ୍ରିୟା ଆଗକୁ ଆଗକୁ ଯାଇଥାଏ, ତେବେ ଏହା ସ୍ପଷ୍ଟ ଯେ ସର୍ବହରା ଶ୍ରେଣୀର ଶ୍ରେଣୀ ସଂଗ୍ରାମ ହେଉଛି ଏକ ନିହାତି ସ୍ୱାଭାବିକ ଓ ଅପରିହାର୍ଯ୍ୟ ଘଟଣା ।

ତେଣୁ, ଆମେ ପୁଞ୍ଜିବାଦୀ ବ୍ୟବସ୍ଥାର ଦ୍ୱନ୍ଦ୍ୱଗୁଡ଼ିକୁ ନ ଲୁଚାଇ, ସେଗୁଡ଼ିକୁ ପଦାରେ ପକାଇବା ଦରକାର, ସେଗୁଡ଼ିକର ରହସ୍ୟ ଉନ୍ମୋଚନ କରିବା ଆବଶ୍ୟକ । ଶ୍ରେଣୀ ସଂଗ୍ରାମକୁ ଆମେ ବାଧା ଦେବା ଉଚିତ ନୁହେଁ, ବରଂ ତାର ଅନ୍ତିମ ପରିଣତି ଆଡ଼କୁ ତାକୁ ଆଗେଇ ନେବା ଆବଶ୍ୟକ ।

ତେଣୁ, ନୀତିଗତ ଭୁଲ ନକରିବା ପାଇଁ, ଆମକୁ ସର୍ବହରା ଶ୍ରେଣୀର ସ୍ୱାର୍ଥ ଓ ବୁର୍ଜୁଆ ଶ୍ରେଣୀର ସ୍ୱାର୍ଥ ମଧ୍ୟରେ ସଙ୍ଗତି ରକ୍ଷା ପାଇଁ ଚେଷ୍ଟା କରୁଥିବା ସଂସ୍କାରବାଦୀ ନୀତିର ଅନୁସରଣ ନକରି, ଠିକ୍ ସେମିତି ମଧ୍ୟସ୍ଥୀମାନେ କହୁଥିବା ''ପୁଞ୍ଜିବାଦର ସମାଜବାଦକୁ ଅଭିବୃଦ୍ଧି'' ନୀତିର ମଧ୍ୟ ଅନୁସରଣ ନକରି, ଏକ ଆପୋସ୍‌ହୀନ ସର୍ବହରା ଶ୍ରେଣୀ ନୀତିର ଅନୁସରଣ କରିବାକୁ ହେବ ।

ଏହା ହିଁ ହେଉଛି ସାମାଜୀକ ଜୀବନ କ୍ଷେତ୍ରରେ, ସମାଜର ଇତିହାସ କ୍ଷେତ୍ରରେ ପ୍ରୟୋଗ ହେଉଥିବା ମାର୍କ୍ସବାଦୀ ଦ୍ୱାନ୍ଦ୍ୱିକ ପଦ୍ଧତି ।

ମାର୍କ୍ସବାଦୀ ଦାର୍ଶନିକ ବସ୍ତୁବାଦ କଥା କହିବାକୁ ଗଲେ, ଭିତ୍ତି ଦୃଷ୍ଟିରୁ ଏହା ଦାର୍ଶନିକ ଭାବବାଦର ସମ୍ପୂର୍ଣ୍ଣ ବିପରିତ ଅଟେ ।

୨) ''ମାର୍କ୍ସବାଦୀ ଦାର୍ଶନିକ ବସ୍ତୁବାଦ'' ର ମୂଖ୍ୟ ବୈଶିଷ୍ଟ୍ୟଗୁଡ଼ିକ ହେଉଛି ନିମ୍ନ ପ୍ରକାରର:

କ) ଭାବବାଦ ବିଚାର କରେ ଯେ ଏହି ଜଗତଟା ଏକ ''ସ୍ୱୟଂ ସମ୍ଭୂତ, ନିରଙ୍କୁଶ ପ୍ରତ୍ୟୟ'', ଏକ ''ଜାଗତିକ ଆତ୍ମା'', ''ଚେତନା''ର ମୂର୍ତ୍ତିମନ୍ତ ପରିପ୍ରକାଶ ମାତ୍ର । ଅଥଚ ଭାବବାଦର ବିପରୀତ ଦୃଷ୍ଟିଭଙ୍ଗୀ ନେଇ, ମାର୍କ୍ସଙ୍କର ଦାର୍ଶନିକ ବସ୍ତୁବାଦ ବିଚାର କରେ ଯେ ଜଗତଟା ତା ନିଜ ସ୍ୱଭାବରୁ ହିଁ *ବସ୍ତୁଗତ* ଅଟେ, ବିଭିନ୍ନତାରେ ପରିପୂର୍ଣ୍ଣ ଜଗତର ଘଟଣାବଳୀ ଗତିଶୀଳ ବସ୍ତୁର ବିଭିନ୍ନ ଆକାର ଛଡ଼ା ଅନ୍ୟ କିଛି ନୁହେଁ, ଘଟଣାବଳୀ ମଧ୍ୟରେ ଥିବା ପରସ୍ପର ସମ୍ବନ୍ଧ ଓ ପରସ୍ପର ଉପରେ ନିର୍ଭରଶୀଳତା - ଦ୍ୱନ୍ଦ୍ୱାତ୍ମକ ପଦ୍ଧତି ପ୍ରମାଣିତ କଲା ଭଳି - ଗତିଶୀଳ ବସ୍ତୁର ବିକାଶ ପ୍ରକ୍ରିୟା ସମ୍ପର୍କୀତ ଏକ ନିୟମର ବଶବର୍ତ୍ତୀ, ଏବଂ ବସ୍ତୁର ଗତି ସମ୍ପର୍କୀତ ନିୟମାବଳୀ ଅନୁସାରେ ଜଗତର ବିକାଶ ଘଟିଥାଏ ଓ ତା ପାଇଁ କୌଣସି ଧରଣର ''ଜାଗତିକ ଆତ୍ମା'' (universal spirit) ର ଆବଶ୍ୟକତା ନାହିଁ ।

ଏଙ୍ଗେଲ୍‌ସ୍ କହିଛନ୍ତି, ''ପ୍ରକୃତି ସମ୍ପର୍କରେ ବସ୍ତୁବାଦୀ ଦୃଷ୍ଟିଭଙ୍ଗୀ କହିଲେ ଯାହା ବୁଝାଏ ତାହା ହେଲା - କୌଣସି ପ୍ରକାର ବାହ୍ୟ ହସ୍ତକ୍ଷେପ ନଥାଇ, ପ୍ରକୃତି ଯେମିତି ଅଛି ତାକୁ ସିଧା ସଳଖେ ସେମିତି ହିଁ ବୁଝିବା ଛଡ଼ା ଅଧିକ କିଛି ବୁଝାଏନା ।'' (F. Engels, *Ludwig Feuerbach*, Eng. ed., Moscow, 1934, p. 79.)

ପ୍ରାଚୀନ ଦାର୍ଶନିକ ହେରାକ୍ଲିଟସ୍‌ଙ୍କ ବିଚାରରେ "ଗୋଟିଏରେ ସମସ୍ତ କଥା ରହିଥିବା ଏହି ଜଗତ କୌଣସି ଈଶ୍ୱର ଅବା କୌଣସି ମଣିଷ ଦ୍ୱାରା ସୃଷ୍ଟି ହୋଇ ନଥିଲା, ଅଥଚ ଏହା ହେଉଛି ଏକ ଜୀବନ୍ତ ଅଗ୍ନିଶିଖା, ଯାହା ସେହିଭାବେ ଅତୀତରେ ଥିଲା, ବର୍ତ୍ତମାନ ରହିଛି ଓ କାଳକାଳକୁ ରହିବ ତଥା ଯାହା ପ୍ରାକୃତିକ ନିୟମାନୁସାରେ ତେଜିଆନ ହୋଇ ଲେଲିହାନ ହେଉଥିବ ଓ ପୁଣି ସେହି ପ୍ରାକୃତିକ ନିୟମାନୁସାରେ ଧିମେଇ ଯାଉଥିବ ।" ହେରାକ୍ଲିଟସ୍‌ଙ୍କ ଏହି ଭାବର ବସ୍ତୁବାଦୀ ଚିନ୍ତା ସମ୍ପର୍କରେ ମତାମତ ଦେଇ ଲେନିନ୍ କହିଛନ୍ତି, "ଦ୍ୱନ୍ଦ୍ୱାତ୍ମକ ବସ୍ତୁବାଦ ସମ୍ପର୍କୀତ ପ୍ରାରମ୍ଭିକ ତତ୍ତ୍ୱାବଳୀର ଏହା ହେଉଛି ଏକ ଅତି ଉତ୍ତମ ବ୍ୟାଖ୍ୟା ।" (Lenin, *Philosophical Notebooks*. Russ. ed., p. 318.)

ଖ) ଭାବବାଦ ବିଚାର କରେ ଯେ ଆମର ଚେତନା ହିଁ ପ୍ରକୃତରେ ବାସ୍ତବ, ଏବଂ ବସ୍ତୁ ଜଗତ, ସତ୍ତା, ପ୍ରକୃତିର ସ୍ଥିତି ରହିଛି କେବଳ ଆମରି ଚେତନାରେ, ଆମରି ଇନ୍ଦ୍ରିୟାନୁଭୂତିରେ, ପ୍ରତ୍ୟୟରେ (ideas) ଓ ପ୍ରତ୍ୟକ୍ଷରେ। ଅଥଚ ଏହାର ବିରୋଧୀ ମତ ପୋଷଣ କରି ମାର୍କ୍ସବାଦୀ ଦାର୍ଶନିକ ବସ୍ତୁବାଦ ବିଚାର କରେ ଯେ ବସ୍ତୁ, ପ୍ରକୃତି, ସତ୍ତା ହେଉଛି ଏପରି ଏକ ବାହ୍ୟଜାଗତିକ, ବସ୍ତୁନିଷ୍ଠ ବାସ୍ତବତା ଯାହା ନିଜର ସ୍ଥିତି ପାଇଁ ଆମ ଚେତନା ଉପରେ ନିର୍ଭର କରେନା - ସ୍ୱାଧୀନ ତାର ସ୍ଥିତି । ବସ୍ତୁ ହେଉଛି ମୂଳ, କାରଣ ଏହା ହିଁ ହେଉଛି ଆମର ଇନ୍ଦ୍ରିୟାନୁଭୂତି, ପ୍ରତ୍ୟୟ ଓ ଚେତନାର ଉତ୍ସ ଏବଂ ଚେତନା ହେଉଛି ଗୌଣ, ଅନୁସୃତ (derivative), କାରଣ ଏହା ହେଉଛି ବସ୍ତୁର ପ୍ରତିଫଳନ, ସତ୍ତାର ପ୍ରତିଫଳନ। ଚିନ୍ତା ହେଉଛି ବସ୍ତୁର ଉତ୍ପାଦନ। ମସ୍ତିଷ୍କ ବସ୍ତୁର ଅଗଣିତ ଆକାର ମଧ୍ୟରେ ଏକ ଆକାର । ବସ୍ତୁର ବିକାଶ ପ୍ରକ୍ରିୟାର ଚରମ ପରାକାଷ୍ଠାର ନିଦର୍ଶନ ହେଲା ମସ୍ତିଷ୍କ ଓ ମସ୍ତିଷ୍କରେ ହିଁ ଚିନ୍ତା କରିବା କାର୍ଯ୍ୟ ସମ୍ପାଦିତ ହୋଇଥାଏ ଏବଂ, ତେଣୁକରି, ଏକ ଗୁରୁତର ଭୁଲ ନକରି କେହି ବି ବସ୍ତୁଠାରୁ ଚିନ୍ତାକୁ ଅଲଗା କରି ପାରିବେନି। ଏଙ୍ଗେଲ୍‌ସ୍ କହିଛନ୍ତି,

"ସତ୍ତା ସହ ଚିନ୍ତାର ସମ୍ପର୍କକୁ, ପ୍ରକୃତି ସହ ଆତ୍ମାର ସମ୍ପର୍କକୁ ନେଇ ଯେଉଁ ପ୍ରଶ୍ନଟି ଉଠୁଛି ତାହା ହେଉଛି ସମଗ୍ର ଦର୍ଶନର ଚରମ ପ୍ରଶ୍ନ । ... ଏହି ପ୍ରଶ୍ନଟିର ଉତ୍ତର ଦାର୍ଶନିକମାନେ ଯିଏ ଯେମିତି ଦେଇଛନ୍ତି ତାକୁ ଧରି ସେମାନଙ୍କୁ ଦୁଇଟି ବିରାଟ ଗୋଷ୍ଠୀରେ ବିଭକ୍ତ କରା ଯାଇଛି । ପ୍ରକୃତି ବଦଳରେ ଆତ୍ମାକୁ ଯେଉଁମାନେ ପ୍ରାଥମିକତା ଦେଲେ ... ସେମାନେ ହେଲେ *ଭାବବାଦୀ* ଗୋଷ୍ଠୀ। ଆଉ ଅନ୍ୟମାନେ, ଯେଉଁମାନେ ପ୍ରକୃତିକୁ ପ୍ରାଥମିକ ବୋଲି ବିଚାର କଲେ, ସେମାନେ ହେଲେ *ବସ୍ତୁବାଦ*ର ବିଭିନ୍ନ ଗୋଷ୍ଠୀ ।" (Karl Marx, *Selected Works*, Eng. ed., Moscow 1946, Vol. I, pp. 366-67.)

ଆହୁରି କହିଛନ୍ତି:

"ବାସ୍ତବ, ଇନ୍ଦ୍ରିୟ ସାହାଯ୍ୟରେ ଅନୁଭୂତ ଜଗତ - ଯାହାର ଅଂଶବିଶେଷ ଖୋଦ୍ ଆମେମାନେ - ହିଁ ହେଉଛି ଏକମାତ୍ର ବାସ୍ତବତା । ... ଆମର ଚେତନା ଓ ଚିନ୍ତା, ଯେତେ ବେଶି ଅତୀନ୍ଦ୍ରିୟ ଦେଖା ଯାଉଥିଲେ ବି, ଏକ ବସ୍ତୁର, ଆମ ଦେହର ଏକ ଅଂଶର, ମସ୍ତିଷ୍କର ଉତ୍ପାଦନ ଅଟେ । ବସ୍ତୁ ମନର ଉତ୍ପାଦନ ନୁହେଁ, ବରଂ ଖୋଦ୍ ମନଟା ବସ୍ତୁର ଚରମ ଉତ୍ପାଦନ, ତା'ଛଡ଼ା ଅନ୍ୟ କିଛି ନୁହେଁ ।" (Karl Marx, *Selected Works*, Russ. ed., Vol. I, p. 332.)

ବସ୍ତୁ ଓ ଚିନ୍ତା ସମ୍ପର୍କୀତ ପ୍ରଶ୍ନ ସମ୍ବନ୍ଧରେ ମାର୍କ୍ସ କହିଛନ୍ତି:

"ଚିନ୍ତା କରୁଥିବା ବସ୍ତୁ ଠାରୁ ଚିନ୍ତାକୁ ଅଲଗା କରିବା ଅସମ୍ଭବ। ବସ୍ତୁ ହିଁ ସମସ୍ତ ପରିବର୍ତ୍ତନର ଭିତ୍ତି ।" (ପୂର୍ବୋକ୍ତ ଗ୍ରନ୍ଥ, ପୃ. ୩୩୨।)

ମାର୍କ୍ସବାଦୀ ଦାର୍ଶନିକ ବସ୍ତୁବାଦର ବର୍ଣ୍ଣନା କରିବାକୁ ଯାଇ ଲେନିନ୍ କହିଛନ୍ତି:

"ବସ୍ତୁବାଦ ସାଧାରଣ ଭାବେ ଏହା ସ୍ୱୀକାର କରେ ଯେ ଚେତନା, ଇନ୍ଦ୍ରିୟାନୁଭୂତି, ଅଭିଜ୍ଞତାଠୁଁ ସ୍ୱାଧୀନ ଭାବେ ବାସ୍ତବ ସତ୍ତା (ବସ୍ତୁ) ବାହ୍ୟନିଷ୍ଠ ହୋଇ ରହିଛି ... ଚେତନା ହେଉଛି ସତ୍ତାର ପ୍ରତିଫଳନ ମାତ୍ର। ପ୍ରତିଫଳନ ଅତି ଉତ୍ତମ ହୋଇଥିଲେ, ତାହା ବସ୍ତୁର ପାଖାପାଖି ଅବିକଳ (ପର୍ଯ୍ୟାପ୍ତ, ସମ୍ପୂର୍ଣ୍ଣ ଭାବେ ସଠିକ) ପ୍ରତିଫଳନ ହୋଇଥାଏ ।" (Lenin, *Materialism and Empirio-Criticism,* Eng. ed., Moscow 1947, pp. 337-38.)

ଏବଂ ଆହୁରି:

— "ବସ୍ତୁ ହେଉଛି ତାହା, ଯାହା ଆମ ଇନ୍ଦ୍ରିୟଗୁଡ଼ିକୁ ପ୍ରଭାବିତ କରି ଇନ୍ଦ୍ରିୟାନୁଭୂତି ଜାତ କରେ, ବସ୍ତୁ ହେଉଛି ସେହି ବାହ୍ୟନିଷ୍ଠ ସତ୍ତା ଯାହା ଆମେ ଇନ୍ଦ୍ରିୟାନୁଭୂତିରେ ପାଇଥାଉ । ... ବସ୍ତୁ, ପ୍ରକୃତି, ସତ୍ତା, ପ୍ରାକୃତିକ, ଏହି ସବୁ ମୌଳିକ ଅଟେ ଏବଂ ଆତ୍ମା, ଚେତନା, ଇନ୍ଦ୍ରିୟାନୁଭୂତି, ଆତ୍ମୀକ (psychic), ଏହି ସବୁ ଗୌଣ ଅଟେ।" (ପୂର୍ବୋକ୍ତ ଗ୍ରନ୍ଥ, ପୃ. ୧୪୫, ୧୪୬।)

— "କିପରି ବସ୍ତୁ ଗତି କରେ ଓ କିପରି '*ବସ୍ତୁ ଚିନ୍ତା କରେ*' ତାର ଛବି ହିଁ ଜଗତର ଛବି ।" (ପୂର୍ବୋକ୍ତ ଗ୍ରନ୍ଥ, ପୃ. ୩୬୭।)

— "ମସ୍ତିଷ୍କ ହେଉଛି ଚିନ୍ତନ ଇନ୍ଦ୍ରିୟ।" (ପୂର୍ବୋକ୍ତ ଗ୍ରନ୍ଥ, ପୃ. ୧୫୨।)

ଗ) ଜଗତ ଓ ତାର ନିୟମାବଳୀକୁ ଜାଣିବା ସମ୍ଭାବନାକୁ ଭାବବାଦ ପ୍ରତ୍ୟାଖ୍ୟାନ କରେ, ଆମ ଜ୍ଞାନର ପ୍ରାମାଣିକତାକୁ ବିଶ୍ୱାସ କରେନା, ବାହ୍ୟନିଷ୍ଠ ସତ୍ୟକୁ ସ୍ୱୀକାର କରେନା, ଏବଂ ବିଚାର କରେ ଯେ ଜଗତଟା "ସ୍ୱ-ସ୍ଥିତ-ବସ୍ତୁ" ("things-in-thmselves") ରେ ଭର୍ତ୍ତିପୂର୍ଣ୍ଣ, ଯାହାକୁ ବିଜ୍ଞାନ କେବେ ବି ଜାଣି ପାରିବନି। ଏହି ଭଳିଆ ଭାବବାଦୀ ମତର ବିରୋଧ କରି ମାର୍କ୍ସବାଦୀ ଦାର୍ଶନିକ ବସ୍ତୁବାଦ ବିଚାର କରେ ଯେ

ଜଗତ ଓ ତାର ନିୟମାବଳୀକୁ ଜାଣିବା ସମ୍ପୂର୍ଣ୍ଣ ରୂପେ ସମ୍ଭବ, ପ୍ରକୃତିର ନିୟମାବଳୀ ସମ୍ପର୍କରେ ଆମର ଜ୍ଞାନ, ପରୀକ୍ଷଣ (experiment) ଓ ପ୍ରୟୋଗ (practice) ଦ୍ୱାରା ପରୀକ୍ଷିତ ହୋଇଥିବା ଯୋଗୁଁ, ବାହ୍ୟନିଷ୍ଠ ସତ୍ୟ ସଙ୍ଗତ ପ୍ରକୃତ ଜ୍ଞାନ ଅଟେ, ଏବଂ ଜଗତରେ ଏପରି କୌଣସି ବସ୍ତୁ ନାହିଁ ଯାହାକୁ ଆଦୌ ଜାଣି ହେବନି, ଅଥଚ ଏବେ ବି ଏପରି କେତେକ ବସ୍ତୁ ରହିଛି ଯାହାକୁ ବର୍ତ୍ତମାନ ସୁଦ୍ଧା ଆମେ ଜାଣି ପାରିନେ। ତାହା ସତ, ହେଲେ ଭବିଷ୍ୟତରେ ଜାଣି ପାରିବା, ବିଜ୍ଞାନ ଓ ପ୍ରୟୋଗର ପ୍ରଚେଷ୍ଟାରେ ସେଗୁଡ଼ିକ ସମ୍ପର୍କରେ ଜ୍ଞାନ ଉନ୍ମୋଚିତ ହେବ, ଆମେ ଜାଣି ପାରିବା ।

କ୍ୟାଣ୍ଟ୍ ଓ ଅନ୍ୟ ଭାବବାଦୀମାନେ ବିଚାର କରନ୍ତି ଯେ ଜଗତକୁ ଜାଣି ହେବନି ଏବଂ ଜଗତରେ ଥିବା ''ସ୍ୱ-ସ୍ଥିତ-ବସ୍ତୁ'' ("things-in-themselves") ସମୁହକୁ ମଧ୍ଯ ଜାଣି ହେବନି । ସେମାନଙ୍କର ଏହି ପ୍ରତତ୍ତ୍ୱ (thesis)-ର ସମାଲୋଚନା କରି, ଏବଂ ଆମର ଜ୍ଞାନ ହେଉଛି ପ୍ରମାଣସିଦ୍ଧ ଜ୍ଞାନ - ଏହି ପ୍ରଖ୍ୟାତ ବସ୍ତୁବାଦୀ ପ୍ରତତ୍ତ୍ୱ (thesis)ର ପକ୍ଷ ସମର୍ଥନ କରି ଏଙ୍ଗେଲ୍ସ୍ ଲେଖିଛନ୍ତି:

''ଏହାର ଓ ଏହି ଭଳିଆ ଅନ୍ୟାନ୍ୟ ସମସ୍ତ ପ୍ରକାରର ଅଦ୍ଭୁତ ଦାର୍ଶନିକ କଳ୍ପନାଜଳ୍ପନାର ଅତ୍ୟନ୍ତ ଫଳପ୍ରଦ ଖଣ୍ଡନର ବାଟ ହେଉଛି ପ୍ରୟୋଗ, ଅର୍ଥାତ୍ ପରୀକ୍ଷଣ ଏବଂ ଅଧ୍ୟବସାୟ । ଯଦି ପ୍ରାକୃତିକ ପ୍ରକ୍ରିୟାଗୁଡ଼ିକୁ ଆମେ ନିଜେ କରି ପାରିବା, ପରିସ୍ଥିତିଗୁଡ଼ିକୁ ବିଚାରକୁ ନେଇ ସେଗୁଡ଼ିକୁ ତିଆରି କରି ବାସ୍ତବ ରୂପ ଦେଇ ପାରିବା, ପୁଣି ଆମର ଉଦ୍ଦେଶ୍ୟ ସାଧନ ପାଇଁ ସେଗୁଡ଼ିକୁ ବ୍ୟବହାର କରି ପାରିବା ଓ ତାହା କରିବା ଦ୍ୱାରା ପ୍ରାକୃତିକ ପ୍ରକ୍ରିୟା ସମ୍ପର୍କରେ ଆମର ଯେଉଁ ଧାରଣା ତାର ସଠିକତା ପ୍ରମାଣିତ କରିଦେବା ପାଇଁ ଆମେ ସକ୍ଷମ ହୋଇ ପାରିବା, ତେବେ କ୍ୟାଣ୍ଟ୍‌ଙ୍କର ସେହି ଦୁର୍ବୋଧ ''ସ୍ୱ-ସ୍ଥିତ-ବସ୍ତୁ'' ("things-in-thmselves")ର ଅନ୍ତଃ ହୋଇଯିବ । ଉଦ୍ଭିଦ ଓ ପ୍ରାଣୀର ଦେହରେ ପ୍ରସ୍ତୁତ ହେଉଥିବା ରାସାୟନିକ ପଦାର୍ଥଗୁଡ଼ିକୁ ଜୈବିକ ରସାୟନ ବିଜ୍ଞାନ ଗୋଟିକ ପରେ ଆଉ ଗୋଟିଏକୁ ଉତ୍ପାଦନ କରିବା ପର୍ଯ୍ୟନ୍ତ ସେଗୁଡ଼ିକ ''ସ୍ୱ-ସ୍ଥିତ-ବସ୍ତୁ'' ("things-in-thmselves") ହୋଇ ରହିଥିଲା, କିନ୍ତୁ ତା ପରେ ଆଉ ''ସ୍ୱ-ସ୍ଥିତ-ବସ୍ତୁ'' ("things-in-thmselves") ହୋଇ ରହିଲାନି, ଆମ ପାଇଁ କେବଳ ବସ୍ତୁ ହୋଇଗଲା । ଉଦାହରଣ ସ୍ୱରୂପ, ଏଲିଜାରିନ୍ - ମଞ୍ଜୁଆତି ଜାତୀୟ ଗଛର ମୂଳରୁ ଆଦାୟ କରା ଯାଉଥିବା ରଙ୍ଗ । ଆମେ ଆଉ ସେହି ଗଛ ଲଗେଇ, ତାକୁ ବଢ଼େଇ ତାର ମୂଳରୁ ସେହି ରଙ୍ଗ ଆଦାୟ କରିବାର ଯନ୍ତ୍ରଣା ମୁଣ୍ଡଉନେ । ଅତି ସହଜରେ, ଅତି ଶସ୍ତାରେ ତାହା ଆମେ ଆଲକାତରାରୁ ଉତ୍ପାଦନ କରୁଛେ । ତିନି ଶହ ବର୍ଷ ଧରି କୋପରନିକସ୍‌ଙ୍କ ସୌର ଜଗତ ସମ୍ପର୍କୀତ ସୂର୍ଯ୍ୟ-କେନ୍ଦ୍ରିକ ତତ୍ତ୍ୱ ଏକ ପ୍ରକଳ୍ପ (hypothesis) ହିଁ ହୋଇ ରହି ଯାଇଥିଲା । ଏହାର ସପକ୍ଷରେ ସମ୍ଭାବନାର ପରିମାଣ ଶହକରେ, ହଜାରକରେ, ଅବା ଅୟୁତକରେ ଏକ ଥିଲା, ତଥାପି ସର୍ବଦା ଏକ ପ୍ରକଳ୍ପ (hypothesis) ହୋଇ ହିଁ ରହି ଆସିଥିଲା । କିନ୍ତୁ ଯେତେବେଳେ ଲେଭେରିଏର (Leverrier) ଏହି ତତ୍ତ୍ୱକୁ ଆଶ୍ରାକରି

ପାଉଥିବା ତଥ୍ୟର ଭିତ୍ତିରେ ଏକ ଅଜଣା ଗ୍ରହ ନିଃସନ୍ଦେହରେ ରହିଥିବା କଥା କେବଳ ନିର୍ଣ୍ଣୟ କରି ନଥିଲେ, ସେହି ଗ୍ରହଟି ନିଶ୍ଚିତ ରୂପେ ଆକାଶର କେଉଁ ସ୍ଥାନରେ ଥାଇ ପାରେ ତାର ଗଣନା ମଧ୍ୟ କରିଥିଲେ, ଏବଂ ଯେତେବେଳେ ଗ୍ୟାଲି (Galle) ଏହି ଗ୍ରହଟିକୁ ଖୋଜି ବାହାର କଲେ, କୋପରନିକସୀୟ ବ୍ୟବସ୍ଥା ସତ୍ୟ ବୋଲି ପ୍ରମାଣିତ ହୋଇଗଲା । (K. Marx, *Selected Works,* Eng. Ed., Moscow 1946, Vol. I, p. 368.)

ମ୍ୟାକ୍(Mach)ଙ୍କର ଅନୁଗାମୀ ବୋଗ୍‌ଦାନୋଭ୍ (Bogdanov), ବାଜାରୋଭ୍ (Bazarov), ୟୁଷ୍‌କେଭିଚ୍ (Yushkevich) ଓ ଅନ୍ୟମାନଙ୍କ ଉପରେ ବିଶ୍ୱାସବାଦ (fideism)ର ଦୋଷ ଦେଇ, ଅପର ପକ୍ଷରେ, ଯେଉଁ ବିଖ୍ୟାତ ବସ୍ତୁବାଦୀ ପ୍ରତତ୍ତ୍ୱ (thesis) ଏହା କହେ ଯେ, ପ୍ରକୃତିର ନିୟମାବଳୀ ସମ୍ପର୍କୀତ ଆମର ବୈଜ୍ଞାନିକ ଜ୍ଞାନ ଯଥାର୍ଥ ଜ୍ଞାନ ଅଟେ, ଓ ବିଜ୍ଞାନର ନିୟମାବଳୀ ବାହ୍ୟନିଷ୍ଠ ସତ୍ୟର ପ୍ରତିରୂପ ଅଟେ, ତାହାର ପକ୍ଷ ସମର୍ଥନ କରି ଲେନିନ୍ କହିଛନ୍ତି:

''ସମସାମୟିକ ବିଶ୍ୱାସବାଦ ବିଜ୍ଞାନକୁ ସମ୍ପୂର୍ଣ୍ଣ ରୂପେ ପ୍ରତ୍ୟାଖ୍ୟାନ କରୁନି, ଯାହା ପ୍ରତ୍ୟାଖ୍ୟାନ କରୁଛି ତାହା ହେଲା ବିଜ୍ଞାନର 'ଅତିରଞ୍ଜିତ ଦାବି', ଅର୍ଥାତ୍, ବାହ୍ୟନିଷ୍ଠ ସତ୍ୟ ସମ୍ପର୍କରେ ଏହାର ଦାବି । ଯଦି (ବସ୍ତୁବାଦୀମାନେ ଭାବିଲା ଭଳି) ବାହ୍ୟନିଷ୍ଠ ସତ୍ୟ ରହିଛି, ଯଦି ବାହ୍ୟ ଜଗତକୁ ମାନବୀୟ 'ଅନୁଭୂତି'ରେ ପ୍ରତିଫଳିତ କରି ଆମକୁ ବାହ୍ୟନିଷ୍ଠ ସତ୍ୟ ଦେବାରେ କେବଳ ପ୍ରାକୃତିକ ବିଜ୍ଞାନ ହିଁ ସକ୍ଷମ, ତେବେ ସମସ୍ତ ଧରଣର ବିଶ୍ୱାସବାଦର ସମ୍ପୂର୍ଣ୍ଣ ରୂପେ ଖଣ୍ଡନ ହୋଇଗଲା । (Lenin, *Materialism and Empirio-Criticism,* Eng. ed., Moscow 1947, pp. 123-24.)

ସଂକ୍ଷେପରେ, ଏହିଗୁଡ଼ିକ ହିଁ ହେଉଛି ମାର୍କ୍ସବାଦୀ ଦାର୍ଶନିକ ବସ୍ତୁବାଦର ଲକ୍ଷଣାତ୍ମକ ବୈଶିଷ୍ଟ୍ୟ ।

ସାମାଜିକ ଜୀବନର ଅଧ୍ୟୟନ କ୍ଷେତ୍ରକୁ, ସମାଜର ଇତିହାସର ଅଧ୍ୟୟନ କ୍ଷେତ୍ରକୁ ଦାର୍ଶନିକ ବସ୍ତୁବାଦର ନୀତିଗୁଡ଼ିକୁ ପ୍ରସାରିତ କରିବା ଆବଶ୍ୟକତା କେତେ ଗୁରୁତ୍ୱପୂର୍ଣ୍ଣ ତଥା ସମାଜର ଇତିହାସ କ୍ଷେତ୍ରରେ ତଥା ସର୍ବହରା ଶ୍ରେଣୀର ପାର୍ଟିର ପ୍ରୟୋଗାତ୍ମକ କାର୍ଯ୍ୟକଳାପ କ୍ଷେତ୍ରରେ ଏହି ନୀତିଗୁଡ଼ିକର ପ୍ରୟୋଗର ଆବଶ୍ୟକତା କେତେ ଗୁରୁତ୍ୱପୂର୍ଣ୍ଣ, ତାହା ବୁଝିବାଟା ଅତି ସହଜ ।

ପ୍ରକୃତିର ଘଟଣାବଳୀ ମଧ୍ୟରେ ଥିବା ସମ୍ପର୍କ ଓ ସେଗୁଡ଼ିକ ମଧ୍ୟରେ ଥିବା ପରସ୍ପର ନିର୍ଭରଶୀଳତା ଯଦି ପ୍ରକୃତିର ବିକାଶ ପ୍ରକ୍ରିୟାର ନିୟମାବଳୀ ହୁଏ, ତେବେ ସେଥିରୁ ଏହା ମଧ୍ୟ ନିଷ୍ପନ୍ନ ହୁଏ ଯେ ସାମାଜିକ ଜୀବନର ଘଟଣାବଳୀ ମଧ୍ୟରେ ଥିବା ସମ୍ପର୍କ ଓ ସେଗୁଡ଼ିକ ମଧ୍ୟରେ ଥିବା ପରସ୍ପର ନିର୍ଭରଶୀଳତା ବି ସମାଜର ବିକାଶ ପ୍ରକ୍ରିୟାର ନିୟମ ଅଟେ, ଏବଂ ଏହା କୌଣସି ପ୍ରକାରର ଆକସ୍ମିକ କଥା ନୁହେଁ ।

ତେଣୁ, ସାମାଜିକ ଜୀବନ, ସମାଜର ଇତିହାସ, 'ଆକସ୍ମିକ' ଘଟଣାବଳୀର ଏକ ସ୍ତୂପ ହୋଇ ଆଉ ରହେନା, କାରଣ ସମାଜର ଇତିହାସ, ସମାଜର ସୁସଙ୍ଗତ ନିୟମାନୁବର୍ତ୍ତୀ ବିକାଶକୁ ବୁଝାଇ ଥାଏ ଓ ସମାଜର ଇତିହାସର ଅଧ୍ୟୟନ ଏକ ବିଜ୍ଞାନ ହୋଇ ଯାଇଥାଏ ।

ତେଣୁ, ସର୍ବହରା ଶ୍ରେଣୀର ପାର୍ଟିର ପ୍ରୟୋଗାତ୍ମକ କାର୍ଯ୍ୟକଳାପ 'ନିହାତି ମହାମାନବମାନଙ୍କ' ସଦିଚ୍ଛା ଉପରେ ଅବା 'ବିବେକ', 'ସର୍ବବ୍ୟାପୀ ନୈତିକତା', ଇତ୍ୟାଦିର ତାଡ଼ନା ଉପରେ ପର୍ଯ୍ୟବେକ୍ଷିତ ନ ହୋଇ ସମାଜର ବିକାଶ ପ୍ରକ୍ରିୟାର ନିୟମାବଳୀ ଓ ସେଗୁଡ଼ିକର ଅଧ୍ୟୟନ ଉପରେ ପର୍ଯ୍ୟବେକ୍ଷିତ ହେବା ଉଚିତ ।

ପୁଣି, ଜଗତକୁ ଜାଣିବା ଯଦି ସମ୍ଭବ ଏବଂ ପ୍ରକୃତିର ବିକାଶ ପ୍ରକ୍ରିୟାର ନିୟମଗୁଡ଼ିକ ସମ୍ପର୍କରେ ଆମର ଜ୍ଞାନ ଯଦି ବାହ୍ୟନିଷ୍ଠ ସତ୍ୟସଙ୍ଗତ ନିର୍ଭରଯୋଗ୍ୟ ଜ୍ଞାନ ହୁଏ, ତେବେ ସାମାଜିକ ଜୀବନକୁ, ସମାଜର ବିକାଶ ପ୍ରକ୍ରିୟାକୁ ମଧ୍ୟ ଜାଣି ହେବ, ଏବଂ ସମାଜର ବିକାଶ ପ୍ରକ୍ରିୟାର ନିୟମାବଳୀ ସମ୍ପର୍କୀତ ବିଜ୍ଞାନର ତଥ୍ୟାବଳୀ ବାହ୍ୟନିଷ୍ଠ ସତ୍ୟ ସଙ୍ଗତ ନିର୍ଭରଯୋଗ୍ୟ ତଥ୍ୟାବଳୀ ହେବ ।

ତେଣୁ, ସାମାଜିକ ଜୀବନର ଘଟଣାବଳୀ କ୍ଷେତ୍ରରେ ଥିବା ସକଳ ପ୍ରକାରର ଜଟିଳତା ସତ୍ତ୍ୱେ, ଜୀବବିଜ୍ଞାନ, ଉଦାହରଣ ସ୍ୱରୂପ, ଯେତିକିଟା ସଠିକ୍ ସମାଜର ଇତିହାସର ବିଜ୍ଞାନଟି ବି ସେତିକିଟା ସଠିକ୍ ହୋଇ ପାରିବ । ସଙ୍ଗେ ସଙ୍ଗେ ପ୍ରୟୋଗାତ୍ମକ ଉଦ୍ଦେଶ୍ୟରେ ସମାଜର ବିକାଶ ପ୍ରକ୍ରିୟାର ନିୟମାବଳୀକୁ ବ୍ୟବହାର କରିବା ପାଇଁ ସକ୍ଷମ ହୋଇପାରିବ ।

ତେଣୁ, ସର୍ବହରା ଶ୍ରେଣୀର ପାର୍ଟି ତାର ପ୍ରୟୋଗାତ୍ମକ କାର୍ଯ୍ୟକଳାପରେ ନିଜକୁ ଆକସ୍ମିକ ଅଭିପ୍ରାୟ ଦ୍ୱାରା ପରିଚାଳିତ ନକରି ସମାଜର ବିକାଶ ପ୍ରକ୍ରିୟାର ନିୟମାବଳୀ ତଥା ତହିଁରୁ ଉପନୀତ ପ୍ରୟୋଗାତ୍ମକ ସିଦ୍ଧାନ୍ତଗୁଡ଼ିକ ଦ୍ୱାରା ପରିଚାଳିତ କରିବା ଉଚିତ ।

ଏଣୁ, ସମାଜବାଦ, ଯାହା ମାନବ ଜାତି ପାଇଁ ଉନ୍ନତତର ଭବିଷ୍ୟତର କେବଳ ମାତ୍ର ଏକ ସ୍ୱପ୍ନ ହୋଇ ରହି ଆସିଥିଲା, ବର୍ତ୍ତମାନ ଏକ ବିଜ୍ଞାନକୁ ରୂପାନ୍ତରିତ ହୋଇଗଲା ।

ତେଣୁ, ମହାସମୁଦ୍ରରେ ଧ୍ରୁବତାରା ଯେପରି ନାବିକମାନଙ୍କୁ ଦିଗ ଦେଖେଇ ଥାଏ, ପରିଚାଳିତ କରିଥାଏ, ଠିକ୍ ସେପରି ବିଜ୍ଞାନ ଓ ପ୍ରୟୋଗାତ୍ମକ କ୍ରିୟାକଳାପ ମଧ୍ୟରେ ଥିବା ବନ୍ଧନ, ତତ୍ତ୍ୱ ଓ ପ୍ରୟୋଗ ମଧ୍ୟରେ ଥିବା ଅବଚ୍ଛେଦ୍ୟ ସମ୍ପର୍କ, ତଥା ସେଗୁଡ଼ିକ ମଧ୍ୟରେ ଥିବା ଐକ୍ୟଭାବ ସର୍ବହରା ଶ୍ରେଣୀର ପାର୍ଟିକୁ ଦିଗ ଦେଖେଇବା ଉଚିତ, ପରିଚାଳିତ କରିବା ଉଚିତ ।

ପୁଣି, ଯଦି ପ୍ରକୃତି, ସତ୍ତା, ବାସ୍ତବ ଜଗତ ମୌଳିକ ହୋଇଥିବା ବେଳେ ଚେତନା, ଚିନ୍ତା ଗୌଣ, ଅନୁସୃତ (derivative) ହୋଇଥାଏ, ଏବଂ ଯଦି ବାସ୍ତବ ଜଗତ, ମଣିଷର ଚେତନା ଠୁଁ ସ୍ୱାଧୀନ ଭାବେ ରହିଥିବା ବାସ୍ତବ ସତ୍ତାର ପ୍ରତିନିଧିତ୍ୱ କରୁଥିବା ବେଳେ, ଚେତନା ଏହି ବାସ୍ତବ ସତ୍ତାର ପ୍ରତିଫଳନ ହୋଇଥାଏ, ତେବେ ସେଥିରୁ ଏହା

ନିଷ୍ପନ୍ନ ହୁଏ ଯେ ସମାଜର ବାସ୍ତବ ଜୀବନ, ତାର ସତ୍ତା, ମଧ୍ୟ ମୌଳିକ ହୋଇଥିବା ବେଳେ ତାର ଆଧ୍ୟାତ୍ମିକ ବା ମାନସିକ (spiritual) ଜୀବନ ଗୌଣ, ଅନୁସୃତ (derivative) ହୋଇଥାଏ, ଏବଂ ସମାଜର ବାସ୍ତବ ଜୀବନ, ମଣିଷର ଇଚ୍ଛା ଠୁଁ ସ୍ୱାଧୀନ ଭାବେ ରହିଥିବା ବାହ୍ୟନିଷ୍ଠ ବାସ୍ତବତା ହୋଇଥିବା ବେଳେ ସମାଜର ଆଧ୍ୟାତ୍ମିକ ବା ମାନସିକ (spiritual) ଜୀବନ ଏହି ବାହ୍ୟନିଷ୍ଠ ବାସ୍ତବତାର ପ୍ରତିଫଳନ ହୋଇଥାଏ, ସତ୍ତାର ପ୍ରତିଫଳନ ହୋଇଥାଏ ।

ତେଣୁ, ସମାଜର ଆଧ୍ୟାତ୍ମିକ ବା ମାନସିକ (spiritual) ଜୀବନର ଗଠନର ଉତ୍ସକୁ, ସାମାଜିକ ଧାରଣା, ସାମାଜିକ ତତ୍ତ୍ୱ, ରାଜନୈତିକ ମତାମତ ଓ ରାଜନୈତିକ ଅନୁଷ୍ଠାନଗୁଡ଼ିକର ମୂଳକୁ ଆମେ ସେଇ ଧାରଣା, ତତ୍ତ୍ୱ, ମତାମତ, ରାଜନୈତିକ ଅନୁଷ୍ଠାନଗୁଡ଼ିକ ମଧ୍ୟରେ ଖୋଜିବା ଉଚିତ ନୁହେଁ । ସେଗୁଡ଼ିକର ଉତ୍ସକୁ, ମୂଳକୁ ସମାଜର ବାସ୍ତବ ଜୀବନର ପରିସ୍ଥିତିଗୁଡ଼ିକ ମଧ୍ୟରେ, ସାମାଜିକ ବାସ୍ତବତା - ଯାହାର ପ୍ରତିଫଳନ ହେଉଛି ଏହି ଧାରଣା, ତତ୍ତ୍ୱ, ମତାମତ, ଇତ୍ୟାଦି, ତାହା - ମଧ୍ୟରେ ହିଁ ଖୋଜିବାକୁ ହେବ ।

ଏଣୁ, ଯଦି ସମାଜର ଇତିହାସର ବିଭିନ୍ନ ଯୁଗରେ ବିଭିନ୍ନ ସାମାଜିକ ଧାରଣା, ତତ୍ତ୍ୱ, ମତାମତ ଓ ରାଜନୈତିକ ଅନୁଷ୍ଠାନ ଆମେ ପରିଲକ୍ଷିତ କରୁଛେ, ଯଦି ଦାସ ବ୍ୟବସ୍ଥାରେ ଆମେ କେତେକ ସାମାଜିକ ଧାରଣା, ତତ୍ତ୍ୱ, ମତାମତ ଓ ରାଜନୈତିକ ଅନୁଷ୍ଠାନକୁ ଦେଖୁ, ସାମନ୍ତବାଦରେ ଆଉ କେତେକକୁ, ଏବଂ ପୁଞ୍ଜିବାଦରେ ପୁଣି ଆଉ କେତେକକୁ, ତେବେ ସେଗୁଡ଼ିକର ବ୍ୟାଖ୍ୟା ସେହି ସାମାଜିକ ଧାରଣା, ତତ୍ତ୍ୱ, ମତାମତ ଓ ରାଜନୈତିକ ଅନୁଷ୍ଠାନଗୁଡ଼ିକର "ସ୍ୱଭାବ", "ଗୁଣ" ଦ୍ୱାରା କରା ନଯାଇ ସାମାଜିକ ବିକାଶର ବିଭିନ୍ନ ଯୁଗରେ ସମାଜର ବାସ୍ତବ ଜୀବନର ବିଭିନ୍ନ ପରିସ୍ଥିତିର ସାହଯ୍ୟରେ କରାଯାଉ ।

ଗୋଟିଏ ସମାଜର ବାସ୍ତବ ସତ୍ତା ଯେମିତି, ଗୋଟିଏ ସମାଜର ବାସ୍ତବ ଜୀବନର ପରିସ୍ଥିତିଗୁଡ଼ିକ ଯେମିତି, ତାକୁ ଧରି ସେହି ସମାଜର ଧାରଣା, ତତ୍ତ୍ୱ, ରାଜନୈତିକ ମତାମତ ଓ ରାଜନୈତିକ ଅନୁଷ୍ଠାନମାନ ହୋଇଥାଏ ।

ଏହା ସମ୍ବନ୍ଧରେ ମାର୍କ୍ସ କହିଛନ୍ତି,

> "ମଣିଷର ଚେତନା ସେମାନଙ୍କର ଅସ୍ତିତ୍ୱକୁ ନିର୍ଦ୍ଧାରିତ କରେନା, ବରଂ ତାର ଓଲଟା - ସେମାନଙ୍କର ସାମାଜିକ ଅସ୍ତିତ୍ୱ ସେମାନଙ୍କର ଚେତନାକୁ ନିର୍ଦ୍ଧାରିତ କରିଥାଏ ।" (K. Marx, *Selected Works*, Eng. ed., Moscow 1946, Vol. I, p. 300.)

ତେଣୁ, ନୀତିଗତ ଭୁଲ ନ କରିବା ପାଇଁ, ନିଜକୁ ଆଳସ୍ୟ ପରାୟଣ ସ୍ୱପ୍ନ ବିଳାସୀଙ୍କ ମଧ୍ୟରେ ନ ପାଇବା ପାଇଁ, ସର୍ବହରା ଶ୍ରେଣୀର ପାର୍ଟି ତାର କାର୍ଯ୍ୟକଳାପକୁ ଭୌତିକ

ସତ୍ତାହୀନ, ଭାବାତ୍ମକ (abstract) ''ମାନବତାବାଦୀ ଚିନ୍ତାର ନୀତିସମୂହ'' (principles of human reason) ଉପରେ ପର୍ଯ୍ୟବେଶିତ ନକରି, ସମାଜର ବାସ୍ତବ ଜୀବନର ବାସ୍ତବ (concrete) ପରିସ୍ଥିତିଗୁଡ଼ିକ - ଯାହା ସାମାଜିକ ବିକାଶ ପ୍ରକ୍ରିୟାର ନିର୍ଦ୍ଧାରକ ଶକ୍ତି, ତାରି - ଉପରେ ପର୍ଯ୍ୟବେଶିତ କରିବା ଆବଶ୍ୟକ, ''ମହାମାନବମାନଙ୍କର'' ସଦିଚ୍ଛା ଉପରେ ପର୍ଯ୍ୟବେଶିତ ନକରି, ସମାଜର ବାସ୍ତବ ଜୀବନର ବିକାଶ ପ୍ରକ୍ରିୟାର ଅସଲ ଚାହିଦାଗୁଡ଼ିକ ଉପରେ ପର୍ଯ୍ୟବେଶିତ କରିବା ଆବଶ୍ୟକ ।

ଅନ୍ୟାନ୍ୟ କାରଣ ମଧ୍ୟରେ, ସମାଜର ବିକାଶ ପ୍ରକ୍ରିୟାରେ ସମାଜର ବାସ୍ତବ ଜୀବନର ପରିସ୍ଥିତିଗୁଡ଼ିକ ଯେଉଁ ମୌଳିକ ଭୂମିକା ପାଳନ କରନ୍ତି ତାକୁ ଅସ୍ୱୀକାର କରିବା କାରଣରୁ ନାରୋଦନିକ୍ (ଲୋକସପକ୍ଷବାଦୀ), ନୈରାଜ୍ୟବାଦୀ ତଥା ସମାଜବାଦୀ-ବିପ୍ଳବୀମାନଙ୍କ ସହ ୟୁଟୋପୀୟବାଦୀମାନଙ୍କର ପତନ ହେଲା । ଭାବବାଦକୁ ଖସି ଖସି, ସେମାନେ ସମାଜର ବାସ୍ତବ ଜୀବନର ବିକାଶ ପ୍ରକ୍ରିୟାର ଆବଶ୍ୟକତା ଉପରେ ସେମାନଙ୍କର ପ୍ରୟୋଗାତ୍ମକ କାର୍ଯ୍ୟକଳାପକୁ ପର୍ଯ୍ୟବେଶିତ କଲେନି, ଅଥଚ୍, ସେହି ଆବଶ୍ୟକତାଗୁଡ଼ିକୁ ବେଖାତିର କରି, ସେଗୁଡ଼ିକଠୁଁ ସ୍ୱତନ୍ତ୍ର ଭାବେ, ସମାଜର ବାସ୍ତବ ଜୀବନଠୁଁ ବିଚ୍ୟୁତ ହୋଇ,''ଆଦର୍ଶ ଯୋଜନା''ଓ''ସର୍ବ-ସୁହାଗୀ ପରିକଳ୍ପନା'' ଉପରେ ପର୍ଯ୍ୟବେଶିତ କଲେ ।

ସମାଜର ବାସ୍ତବ ଜୀବନର ବିକାଶ ପ୍ରକ୍ରିୟାର ଆବଶ୍ୟକତାଗୁଡ଼ିକର ଭିତ୍ତି ଉପରେ ଏହାର ପ୍ରୟୋଗାତ୍ମକ କାର୍ଯ୍ୟକଳାପକୁ ପର୍ଯ୍ୟବେଶିତ କରିବା ସଙ୍ଗେ ସଙ୍ଗେ ସମାଜର ବାସ୍ତବ ଜୀବନଠୁଁ ନିଜକୁ କେବେ ହେଁ ବିଚ୍ୟୁତ ନ କରିବାରେ ହିଁ ମାର୍କ୍ସବାଦ-ଲେନିନ୍‌ବାଦର ସାମର୍ଥ୍ୟ ଓ ପ୍ରାଣଶକ୍ତି ନିହିତ ଥାଏ ।

ଅଥଚ୍ ମାର୍କ୍ସଙ୍କ କଥାରୁ ଏହା ନିଷ୍ପନ୍ନ ହୁଏନା ଯେ ସମାଜର ଜୀବନରେ ସାମାଜିକ ଧାରଣା, ତତ୍ତ୍ୱ, ମତାମତ ଓ ରାଜନୈତିକ ଅନୁଷ୍ଠାନଗୁଡ଼ିକର କୌଣସି ମହତ୍ତ୍ୱ ନାହିଁ - ସେଗୁଡ଼ିକ ସାମାଜିକ ସତ୍ତା ଉପରେ, ସମାଜର ଜୀବନର ବାସ୍ତବିକ ପରିସ୍ଥିତି ଉପରେ କୌଣସି ଭାବର ଅନୁରୂପ ପ୍ରଭାବ ପକାନ୍ତିନି । ଆମେ ବର୍ତ୍ତମାନ ସୁଦ୍ଧା କେବଳ ସାମାଜିକ ଧାରଣା, ତତ୍ତ୍ୱ, ମତାମତ ଓ ରାଜନୈତିକ ଅନୁଷ୍ଠାନଗୁଡ଼ିକର *ଉତ୍ସ, ସେଗୁଡ଼ିକର ଦେଖା ଦେବାର ଢଙ୍ଗ,* ସମାଜର ଆଧ୍ୟାତ୍ମିକ ବା ମାନସିକ (spiritual) ଜୀବନରେ ତାର ବାସ୍ତବ ଜୀବନର ପରିସ୍ଥିତିଗୁଡ଼ିକର ପ୍ରତିଫଳନ ସମ୍ବନ୍ଧିତ ବିଷୟ ହିଁ କହୁଥିଲୁ। ସାମାଜିକ ଧାରଣା, ତତ୍ତ୍ୱ, ମତାମତ ଓ ରାଜନୈତିକ ଅନୁଷ୍ଠାନଗୁଡ଼ିକର *ଗୁରୁତ୍ୱକୁ,* ଇତିହାସରେ ସେଗୁଡ଼ିକର "ଭୂମିକା'କୁ ଅଗ୍ରାହ୍ୟ କରିବା ତ ଦୂରେ ଥାଉ, ସମାଜର ଜୀବନରେ, ତାର ଇତିହାସରେ ଏହି ଉପାଦାନଗୁଡ଼ିକର ମୁଖ୍ୟ ଭୂମିକା ଓ ଗୁରୁତ୍ୱ ଉପରେ ଐତିହାସିକ ବସ୍ତୁବାଦ ଜୋର୍ ଦେଇଥାଏ ।

ବିଭିନ୍ନ ଧରଣର ସାମାଜିକ ଧାରଣା ଓ ତତ୍ତ୍ୱ ରହିଛି । ପୁରୁଣା ଧାରଣା ଓ ତତ୍ତ୍ୱସବୁ ରହିଛି ଯାହାର ଦିନକାଳ ସରିଥିଲେ ବି ସମାଜର ମୃତପ୍ରାୟ ଶକ୍ତିଗୁଡ଼ିକର ସ୍ୱାର୍ଥ ସାଧନ କରିବା କାମରେ ଆସୁଛନ୍ତି । ସମାଜର ପ୍ରଗତି ପଥରେ, ବିକାଶ ପ୍ରକ୍ରିୟାରେ ବାଧା ସୃଷ୍ଟି କରିବାରେ ହିଁ ସେଗୁଡ଼ିକର ବିଶେଷତ୍ୱ ଥାଏ । ଆଉ ରହିଛି ନୂଆ ଓ ଆଗୁଆ ଚିନ୍ତା, ଯାହା ସମାଜର ଆଗୁଆ ଶକ୍ତିଗୁଡ଼ିକର ସ୍ୱାର୍ଥକୁ ଆଗେଇ ନେଉଛନ୍ତି । ସମାଜର ପ୍ରଗତିକୁ, ବିକାଶ ପ୍ରକ୍ରିୟାକୁ ସୁଗମ କରିବାରେ ହିଁ ସେଗୁଡ଼ିକର ଗୁରୁତ୍ୱ ନିହିତ ଥାଏ, ଏବଂ ସମାଜର ବାସ୍ତବ ଜୀବନର ବିକାଶ ପ୍ରକ୍ରିୟାର ଆବଶ୍ୟକତାଗୁଡ଼ିକୁ ସେଗୁଡ଼ିକ ଯେତେ ଅଧିକ ସଠିକତା ସହ ପ୍ରତିଫଳିତ କରିବେ, ସେଗୁଡ଼ିକର ଗୁରୁତ୍ୱ ସେତେ ବେଶି ।

ସମାଜର ବାସ୍ତବ ଜୀବନର ବିକାଶ ପ୍ରକ୍ରିୟା ସମାଜର କାନ୍ଧରେ ନୂଆ କାର୍ଯ୍ୟଭାର ଲଦି ଦେବା ପରେ ହିଁ ନୂଆ ସାମାଜିକ ଧାରଣା ଓ ତତ୍ତ୍ୱମାନ ଦେଖା ଦେଇଥାଏ । କିନ୍ତୁ ଥରେ ଦେଖା ଦେବା ପରେ ସେଗୁଡ଼ିକ ମହା ପ୍ରଭାବଶାଳୀ ଶକ୍ତି ହୋଇଯାଇ ସମାଜର ବାସ୍ତବ ଜୀବନର ବିକାଶ ପ୍ରକ୍ରିୟା ସମାଜର କାନ୍ଧରେ ଲଦି ଦେଇଥିବା ନୂଆ କାର୍ଯ୍ୟଭାରର ସମ୍ପାଦନା ପଥକୁ ସୁଗମ କରନ୍ତି, ସମାଜର ପ୍ରଗତିର ପଥକୁ ସୁଗମ କରନ୍ତି । ଠିକ୍ ଏହି କ୍ଷେତ୍ରରେ ହିଁ ନୂଆ ଧାରଣା, ନୂଆ ତତ୍ତ୍ୱ, ନୂଆ ରାଜନୈତିକ ମତାମତ ଓ ନୂଆ ରାଜନୈତିକ ଅନୁଷ୍ଠାନଗୁଡ଼ିକରେ - ସଂଗଠନ ଗଢ଼ିବା, (ଲୋକଙ୍କୁ) ପ୍ରବର୍ତ୍ତେଇବା, (ସମାଜ ବ୍ୟବସ୍ଥାରେ) ପରିବର୍ତ୍ତନ ଘଟେଇବା ପାଇଁ - ରହିଥିବା ବିପୁଳ ଶକ୍ତି ପ୍ରକଟିତ ହୋଇଥାଏ ।

ନୂଆ ସାମାଜିକ ଧାରଣା ଓ ତତ୍ତ୍ୱମାନ ଦେଖା ଦେଇଥାଏ ଠିକ୍ ଏହି କାରଣରୁ ଯେ ସେଗୁଡ଼ିକ ସମାଜ ପାଇଁ ଆବଶ୍ୟକ, ଠିକ୍ ଏହି କାରଣରୁ ଯେ ସେଗୁଡ଼ିକର ସଂଗଠନ ଗଢ଼ିବା, (ଲୋକଙ୍କୁ) ପ୍ରବର୍ତ୍ତେଇବା, (ସମାଜ ବ୍ୟବସ୍ଥାରେ) ପରିବର୍ତ୍ତନ ଘଟେଇବା ପାଇଁ ରହିଥିବା ବିପୁଳ ଶକ୍ତିର ଉପଯୋଗ ବିନା ସମାଜର ବାସ୍ତବ ଜୀବନର ବିକାଶ ପ୍ରକ୍ରିୟାର ଜରୁରି କାର୍ଯ୍ୟଗୁଡ଼ିକୁ ସମ୍ପାଦନ କରିବା ଅସମ୍ଭବ ହୋଇଯିବ ।

ସମାଜର ବାସ୍ତବ ଜୀବନର ବିକାଶ ପ୍ରକ୍ରିୟା ଦ୍ୱାରା ପ୍ରସ୍ତୁତ ହୋଇଥିବା ଜରୁରି କାର୍ଯ୍ୟଗୁଡ଼ିକରୁ ଜାତ ନୂଆ ସାମାଜିକ ଧାରଣା ଓ ତତ୍ତ୍ୱମାନ ବାଧାବିଘ୍ନ ନମାନି ଆଗକୁ ଆଗକୁ ମାଡ଼ି ଚାଲେ, ଜନଗଣଙ୍କ ସମ୍ପତ୍ତି ହୋଇଯାଏ, ସମାଜର ପ୍ରଗତି ପଥରେ, ବିକାଶ ପ୍ରକ୍ରିୟାରେ ବାଧା ସୃଷ୍ଟି କରୁଥିବା ସମାଜର ମୃତପ୍ରାୟ ଶକ୍ତିଗୁଡ଼ିକ ବିରୁଦ୍ଧରେ ଜନଗଣଙ୍କୁ ପ୍ରବର୍ତ୍ତାଏ, ସଂଗଠିତ କରେ, ଓ ଏହିଭାବେ ସମାଜର ମୃତପ୍ରାୟ ଶକ୍ତିଗୁଡ଼ିକର ପତନ ଘଟେଇବା ପାଇଁ ପଥ ସୁଗମ କରିଥାଏ ।

ଏହିଭାବେ, ସମାଜର ବାସ୍ତବ ଜୀବନର ବିକାଶ ପ୍ରକ୍ରିୟାର ଜରୁରି କାର୍ଯ୍ୟର ଭିତ୍ତିଭୂମିରେ ଦେଖା ଦେଇଥିବା, ସାମାଜିକ ସତ୍ତାର ବିକାଶ ପ୍ରକ୍ରିୟାରୁ ଜାତ ହୋଇଥିବା ସାମାଜିକ ଧାରଣା, ତତ୍ତ୍ୱ, ମତାମତ ଓ ରାଜନୈତିକ ଅନୁଷ୍ଠାନଗୁଡ଼ିକ ଓଲଟି ସମାଜର ବାସ୍ତବ ଜୀବନ ଉପରେ, ସାମାଜିକ ସତ୍ତା ଉପରେ, ନିଜର ପ୍ରଭାବ ବିସ୍ତାର କରି ସମାଜର

ବାସ୍ତବ ଜୀବନର ବିକାଶ ପ୍ରକ୍ରିୟାର ଜରୁରି କାର୍ଯ୍ୟର ସମ୍ପାଦନା ପାଇଁ ଆବଶ୍ୟକୀୟ ପରିସ୍ଥିତି ସୃଷ୍ଟି କରନ୍ତି, ଓ ଆହୁରି ଅଧିକ ବିକାଶକୁ ସମ୍ଭବ କରନ୍ତି ।

"ଜନଗଣଙ୍କୁ ଜାବୁଡ଼ି ଧରିବା କ୍ଷଣି ତତ୍ତ୍ୱ ଏକ ବାସ୍ତବ ଶକ୍ତି ହୋଇଯାଏ ।" (*Zur Kritik der Hegelschen Rechtphilosophie.*)

ତେଣୁ, ସମାଜର ବାସ୍ତବ ଜୀବନର ପରିସ୍ଥିତିଗୁଡ଼ିକୁ ପ୍ରଭାବିତ କରିବା ପାଇଁ ସକ୍ଷମ ହେବା ଉଦ୍ଦେଶ୍ୟରେ, ସେଗୁଡ଼ିକର ବିକାଶ ଓ ଉନ୍ନତିକୁ ତ୍ୱରାନ୍ୱିତ କରିବା ଉଦ୍ଦେଶ୍ୟରେ ସର୍ବହରା ଶ୍ରେଣୀର ପାର୍ଟି ଏପରି ଏକ ସାମାଜିକ ତତ୍ତ୍ୱ, ଏପରି ଏକ ସାମାଜିକ ଧାରଣା ଉପରେ ନିର୍ଭର କରିବା ଆବଶ୍ୟକ ଯାହା ସମାଜର ବାସ୍ତବ ଜୀବନର ବିକାଶ ପ୍ରକ୍ରିୟାର ଜରୁରି ଆବଶ୍ୟକତାଗୁଡ଼ିକୁ ସଠିକ୍ ଭାବେ ପ୍ରତିଫଳିତ କରି ପାରୁଥିବ । ଅତଏବ ତାହା ଜନଗଣଙ୍କର ବିପୁଳ ଅଂଶକୁ ଗତିଶୀଳ କରିବା ପାଇଁ, ସେମାନଙ୍କୁ ପ୍ରବର୍ତ୍ତେଇ, ସଂଗଠିତ କରି - ପ୍ରତିକ୍ରିୟାଶୀଳ ଶକ୍ତିଗୁଡ଼ିକୁ ଚୂରମାର କରିବା ସଙ୍ଗେ ସଙ୍ଗେ ସମାଜର ଆଗୁଆ ଶକ୍ତିଙ୍କ ପାଇଁ ପଥ ପରିଷ୍କାର କରିବା ପାଇଁ ପ୍ରସ୍ତୁତ ଥିବ । - ସର୍ବହରା ପାର୍ଟିର ଏକ ବିରାଟ ସେନା ବାହିନୀ ଗଠନ କରିବା ପାଇଁ ସକ୍ଷମ ଥିବ ।

"ଅର୍ଥନୀତିଜ୍ଞ" ଓ ମେନ୍‌ଶେଭିକମାନଙ୍କର ପତନର ଅନ୍ୟାନ୍ୟ କାରଣ ମଧ୍ୟରେ ଏହା ମଧ୍ୟ ଏକ କାରଣ ଥିଲା ଯେ ସେମାନେ ଆଗୁଆ ତତ୍ତ୍ୱ, ଆଗୁଆ ଧାରଣାର ପ୍ରବର୍ତ୍ତେଇବା, ସଂଗଠିତ କରିବା ଓ ପରିବର୍ତ୍ତନ ଘଟେଇବା ଭୂମିକାକୁ ସ୍ୱୀକାର କଲେନି ଏବଂ, ଭ୍ରମପୂର୍ଣ୍ଣ ବସ୍ତୁବାଦ ଭିତରେ ବୁଡ଼ି ରହି, ଏହି ଉପାଦାନଗୁଡ଼ିକର ଭୂମିକାକୁ ପ୍ରାୟ ତୁଚ୍ଛ କରିଦେଲେ ତଥା, ଏଇ ଭାବେ, ପାର୍ଟିକୁ ନିଷ୍କ୍ରିୟତା ଓ ଦୁସ୍ଥତାର ଦଣ୍ଡ ଦେଲେ ।

ସମାଜର ବାସ୍ତବ ଜୀବନର ବିକାଶ ପ୍ରକ୍ରିୟାର ଜରୁରି ଆବଶ୍ୟକତାଗୁଡ଼ିକୁ ସଠିକ୍ ଭାବେ ପ୍ରତିଫଳିତ କରି ପାରୁଥିବା ଆଗୁଆ ତତ୍ତ୍ୱ ଉପରେ ନିର୍ଭର କରିବାରେ, ତତ୍ତ୍ୱକୁ ଏକ ଯଥାର୍ଥ ସ୍ତରକୁ ଉନ୍ନତ କରିବାରେ, ଏହି ତତ୍ତ୍ୱର ପ୍ରବର୍ତ୍ତେଇବା, ସଂଗଠିତ କରିବା ଓ ପରିବର୍ତ୍ତନ ଘଟେଇବା ଶକ୍ତିକୁ, ଅଳ୍ପ ବହୁତ ନ ବିଚାରି, ପାରୁ ପର୍ଯ୍ୟନ୍ତ ବ୍ୟବହାର କରିବାରେ ହିଁ ଏହାର ଦାୟିତ୍ୱ ନିହିତ ବୋଲି ହୃଦୟଙ୍ଗମ କରିବାରେ ହିଁ ମାର୍କ୍ସବାଦ-ଲେନିନ୍‌ବାଦର ସାମର୍ଥ୍ୟ ଓ ପ୍ରାଣଶକ୍ତି ମୂର୍ତ୍ତିମନ୍ତ ହୋଇଥାଏ।

ସାମାଜିକ ସତ୍ତା ଓ ସାମାଜିକ ଚେତନା ମଧ୍ୟରେ ଥିବା ସମ୍ବନ୍ଧକୁ ନେଇ ଉଠୁଥିବା ପ୍ରଶ୍ନ ସମ୍ପର୍କରେ, ବାସ୍ତବ ଜୀବନର ବିକାଶ ପ୍ରକ୍ରିୟାର ତଥା ସମାଜର ଆଧ୍ୟାତ୍ମିକ ବା ମାନସିକ (spiritual) ଜୀବନର ବିକାଶ ପ୍ରକ୍ରିୟାର ପରିସ୍ଥିତିଗୁଡ଼ିକ ମଧ୍ୟରେ ଥିବା ସମ୍ବନ୍ଧକୁ ନେଇ ଉଠୁଥିବା ପ୍ରଶ୍ନ ସମ୍ପର୍କରେ, ଏହା ହିଁ ହେଉଛି ଐତିହାସିକ ବସ୍ତୁବାଦର ଉତ୍ତର।

### ୩) ଐତିହାସିକ ବସ୍ତୁବାଦ

ବର୍ତ୍ତମାନ ଅନୁବର୍ତ୍ତୀ ପ୍ରଶ୍ନଟିର ବ୍ୟାଖ୍ୟା କରିବାକୁ ହେବ: ଐତିହାସିକ ବସ୍ତୁବାଦ ଦୃଷ୍ଟିକୋଣରୁ ଅନ୍ତିମ ବିଶ୍ଳେଷଣରେ ସମାଜର ଆକୃତି, ତାର ଧାରଣା, ମତାମତ,

ରାଜନୈତିକ ଅନୁଷ୍ଠାନ, ଇତ୍ୟାଦିକୁ ନିର୍ଦ୍ଧାରଣ କରୁଥିବା ''ସମାଜର ବାସ୍ତବ ଜୀବନର ପରିସ୍ଥିତିମାନ''ର ଅର୍ଥ କଅଣ?

ଅର୍ଥାତ୍, ଏହିସବୁ ''ସମାଜର ବାସ୍ତବ ଜୀବନର ପରିସ୍ଥିତିମାନ'' କଅଣ, ସେଗୁଡ଼ିକର ନିଜସ୍ୱ, ପ୍ରାଭେଦିକ ବୈଶିଷ୍ଟ୍ୟମାନ କଅଣ?

''ସମାଜର ବାସ୍ତବ ଜୀବନର ପରିସ୍ଥିତିମାନ'' ରୂପକ ଅବଧାରଣାଟିରେ, ନିଃସନ୍ଦେହରେ, ପ୍ରଥମେ ସମାଜକୁ ଘେରି ରହିଥିବା ପ୍ରକୃତି ରହିଛି, ଭୌଗଳିକ ପରିବେଶ ରହିଛି, ଯାହା ସମାଜର ବିକାଶ ପ୍ରକ୍ରିୟାକୁ ନିଶ୍ଚିତ ରୂପେ ପ୍ରଭାବିତ କରିଥାଏ ତଥା ସମାଜର ବାସ୍ତବ ଜୀବନର ପରିସ୍ଥିତିଗୁଡ଼ିକ ମଧ୍ୟରୁ ଯାହାକୁ ଅପରିହାର୍ଯ୍ୟ ତଥା ସର୍ବଦା ଉପସ୍ଥିତ, ଅଟଳ ବୋଲି ବିଚାର କରା ଯାଇଥାଏ। ସେହି ସମାଜର ବିକାଶ ପ୍ରକ୍ରିୟାରେ ଭୌଗଳିକ ପରିବେଶର ଭୂମିକା କଅଣ ? ଭୌଗଳିକ ପରିବେଶ ଏକ ମୁଖ୍ୟ ଶକ୍ତି ହୋଇ ସମାଜର ଆକୃତି, ମଣିଷର ସାମାଜିକ ବ୍ୟବସ୍ଥାର ଚରିତ୍ର, ଗୋଟିଏ ବ୍ୟବସ୍ଥାରୁ ଆଉ ଗୋଟିଏକୁ ହେଉଥିବା ପରିବର୍ତ୍ତନକୁ ନିର୍ଦ୍ଧାରଣ କରେ କି ?

ଐତିହାସିକ ବସ୍ତୁବାଦ ଏହି ପ୍ରଶ୍ନର ନାସ୍ତିସୂଚକ ଉତ୍ତର ଦିଏ । - ନାଁ ।

ନିଃସନ୍ଦେହରେ, ଭୌଗଳିକ ପରିବେଶ ସମାଜର ବିକାଶ ପ୍ରକ୍ରିୟାର ଅପରିହାର୍ଯ୍ୟ ଓ ସଦା ଉପସ୍ଥିତ, ଅଟଳ ପରିସ୍ଥିତିଗୁଡ଼ିକ ମଧ୍ୟରୁ ଗୋଟିଏ। ନିଃସନ୍ଦେହରେ, ତାହା ସମାଜର ବିକାଶ ପ୍ରକ୍ରିୟାକୁ ପ୍ରଭାବିତ କରିଥାଏ - ତାର ବିକାଶକୁ ତ୍ୱରାନ୍ୱିତ କରିଥାଏ ଅବା ବାଧା ଦେଇଥାଏ । କିନ୍ତୁ ଏହାର ପ୍ରଭାବ "ନିର୍ଦ୍ଧାରଣକ୍ଷମ' ପ୍ରଭାବ ନୁହେଁ, ଯେହେତୁ ସମାଜର ପରିବର୍ତ୍ତନ ଓ ବିକାଶର ଗତି ଭୌଗଳିକ ପରିବେଶର ପରିବର୍ତ୍ତନ ଓ ବିକାଶର ଗତି ଅପେକ୍ଷା ଅତୁଳନୀୟ ଭାବେ ଅତି ଦ୍ରୁତ ହୋଇଥାଏ । ମାତ୍ର ତିନି ହଜାର ବର୍ଷର ସମୟ ମଧ୍ୟରେ ୟୁରୋପରେ ଗୋଟଏ ପରେ ଆଉ ଗୋଟଏ - ଆଦିମ ଗୋଷ୍ଠୀୟ ବ୍ୟବସ୍ଥା, ଦାସ ବ୍ୟବସ୍ଥା ଓ ସାମନ୍ତବାଦୀ ବ୍ୟବସ୍ଥା - ଏପରି ତିନୋଟି ବିଭିନ୍ନ ସାମାଜିକ ବ୍ୟବସ୍ଥା ଅତିକ୍ରାନ୍ତ ହୋଇ ସାରିଛି । ପୁଣି ୟୁରୋପର ପୂର୍ବ ଭାଗରେ, ସୋଭିୟେତ୍ ୟୁନିଅନ୍‌ରେ, ଏପରିକି ଚାରୋଟି ସାମାଜିକ ବ୍ୟବସ୍ଥାର ପରିବର୍ତ୍ତନ ହୋଇ ଯାଇଛି । ତଥାପି ଏହି ସମୟ ମଧ୍ୟରେ ୟୁରୋପର ଭୌଗଳିକ ପରିବେଶର ହୁଏତ ଆଦୌ ପରିବର୍ତ୍ତନ ହୋଇନି ଅବା ଯାହା ବି ଟିକିଏ ନିଖିଏ ହୋଇଥିବ ତାକୁ ଭୂଗୋଳ ହିଁ ନିଜେ ଦୃଷ୍ଟିକୁ ନେଉନି । ତାହା ତ ନିହାତି ସ୍ୱାଭାବିକ କଥା । ଭୌଗଳିକ ପରିବେଶରେ କୌଣସି ପ୍ରକାରର ଗୁରୁତ୍ୱପୂର୍ଣ୍ଣ ପରିବର୍ତ୍ତନ ପାଇଁ ନିୟୁତ ନିୟୁତ ବର୍ଷ ଲାଗି ଥାଏ, ଅଥଚ ମଣିଷର ସମାଜ ବ୍ୟବସ୍ଥାରେ ଏପରିକି ଅତି ଗୁରୁତ୍ୱପୂର୍ଣ୍ଣ ପରିବର୍ତ୍ତନଗୁଡ଼ିକ ପାଇଁ କେତୋଟି ଶହ ଅବା ଗୋଟିଏ ବା ଦୁଇଟି ହଜାର ବର୍ଷ ଯଥେଷ୍ଟ ହୋଇଥାଏ ।

ଏହି କଥାରୁ ଏହା ନିଷ୍ପନ୍ନ ହୁଏ ଯେ ଭୌଗଳିକ ପରିବେଶ ସାମାଜିକ ବିକାଶର ମୁଖ୍ୟ କାରଣ, "ନିର୍ଦ୍ଧାରକ" କାରଣ ହୋଇ ନପାରେ ଯେହେତୁ ଯାହା ହଜାର ହଜାର ବର୍ଷରେ ମଧ

ପ୍ରାୟ ଅପରିବର୍ତ୍ତିତ ହୋଇ ରହିଥାଏ, ତାହା ମାତ୍ର କେତୋଟି ଶହ ବର୍ଷ ମଧ୍ୟରେ ଅତି ମୌଳିକ ଭାବେ ପରିବର୍ତ୍ତିତ ହେଉଥିବା ବିକାଶର ମୂଖ୍ୟ କାରଣ ହୋଇ ନପାରେ ।

ପୁଣି, ଏଥିରେ କୌଣସି ସନ୍ଦେହ ନାହିଁ ଯେ, ଜନସଂଖ୍ୟାର ଘନତ୍ୱ ଯେଉଁ ମାତ୍ରାର ହେଉନା କାହିଁକି ''ସମାଜର ବାସ୍ତବ ଜୀବନର ପରିସ୍ଥିତିମାନ'' ରୂପକ ଅବଧାରଣାଟିର ଅର୍ଥର ଅନ୍ତର୍ଗତ ହୋଇ ରହିଥାଏ ଜନସଂଖ୍ୟା ବୃଦ୍ଧି, କାରଣ ସମାଜର ବାସ୍ତବ ଜୀବନର ପରିସ୍ଥିତିମାନଙ୍କର ଏକ ଅପରିହାର୍ଯ୍ୟ ଉପାଦାନ ହେଲା ମଣିଷ ଏବଂ ଯେତେ ଅଳ୍ପ ହେଲେ ବି ଏକ ନିର୍ଦ୍ଦିଷ୍ଟ ସଂଖ୍ୟାର ମଣିଷ ନଥାଇ ସମାଜର ବାସ୍ତବ ଜୀବନ ଅସମ୍ଭବ। ମଣିଷର ସାମାଜିକ ବ୍ୟବସ୍ଥାର ଚରିତ୍ର ନିର୍ଦ୍ଧାରଣ କରିବାରେ ଜନସଂଖ୍ୟା ବୃଦ୍ଧି ମୂଖ୍ୟ ଶକ୍ତି ନୁହେଁ କି ?

ଐତିହାସିକ ବସ୍ତୁବାଦ ଏହି ପ୍ରଶ୍ନଟିର ମଧ୍ୟ ନାସ୍ତିସୂଚକ ଉତ୍ତର ଦିଏ । - ନାଁ ।

ଜନସଂଖ୍ୟା ବୃଦ୍ଧି ସମାଜର ବିକାଶ ପ୍ରକ୍ରିୟାକୁ ପ୍ରଭାବିତ କରୁଥିଲେ ବି - ସମାଜର ବିକାଶ ପଥକୁ ସୁଗମ କରୁଥିଲେ ଅବା ସେଥିରେ ବାଧା ସୃଷ୍ଟି କରୁଥିଲେ ବି - ସମାଜର ବିକାଶ ପ୍ରକ୍ରିୟାର ମୂଖ୍ୟ ଶକ୍ତି ହୋଇ ପାରେନା, ସମାଜର ବିକାଶ ପ୍ରକ୍ରିୟା ଉପରେ ଏହାର ପ୍ରଭାବ ଏକ ନିର୍ଦ୍ଧାରକ ପ୍ରଭାବ ହୋଇ ପାରେନା, କାରଣ, କାହିଁକି ଏକ ପ୍ରଚଳିତ ଥିବା ସାମାଜିକ ବ୍ୟବସ୍ଥାର ସ୍ଥାନ ନିର୍ଦ୍ଦିଷ୍ଟ ଭାବେ ଅମୁକ ନୂଆ ବ୍ୟବସ୍ଥା ନେଇଥାଏ ଓ ଅନ୍ୟ କୌଣସି ବ୍ୟବସ୍ଥା ନେଇ ନଥାଏ, କାହିଁକି ଆଦିମ ଗୋଷ୍ଠୀୟ ବ୍ୟବସ୍ଥାର ସ୍ଥାନ ନିର୍ଦ୍ଦିଷ୍ଟ ଭାବେ ଦାସ ବ୍ୟବସ୍ଥା ନେଇଥିଲା, ଦାସ ବ୍ୟବସ୍ଥାର ସ୍ଥାନ ସାମନ୍ତବାଦୀ ବ୍ୟବସ୍ଥା ଓ ସାମନ୍ତବାଦୀ ବ୍ୟବସ୍ଥାର ସ୍ଥାନ ବୁର୍ଜୁଆ ବ୍ୟବସ୍ଥା ନେଇଥିଲା, ଅଥଚ ଅନ୍ୟ କୌଣସିଟା ନୁହେଁ, ଜନସଂଖ୍ୟା ବୃଦ୍ଧି, ଏକାକୀ, ଏଭଳି ପ୍ରଶ୍ନର ଉତ୍ତର ପାଇଁ ଖିଅ ଯୋଗେଇ ପାରେନା ।

ଯଦି ଜନସଂଖ୍ୟା ବୃଦ୍ଧି ସାମାଜିକ ବିକାଶ ପ୍ରକ୍ରିୟାର ନିର୍ଦ୍ଧାରକ ଶକ୍ତି ହୋଇଥାନ୍ତା, ତେବେ ଯେଉଁଠି ଜନସଂଖ୍ୟାର ଘନତ୍ୱ ଯେତେ ଅଧିକ, ସେଇଠି ସେହି ଅନୁପାତରେ ନିଶ୍ଚିତ ରୂପେ ଉନ୍ନତତର ଧରଣର ସାମାଜିକ ବ୍ୟବସ୍ଥା ଦେଖା ଦିଅନ୍ତା । କିନ୍ତୁ ଏପରି ଘଟୁଥିବା କଥା ଆମେ ଦେଖୁନେ । ଚୀନର ଜନସଂଖ୍ୟାର ଘନତ୍ୱ ଯୁକ୍ତରାଷ୍ଟ୍ର ଆମେରିକାର ଜନସଂଖ୍ୟାର ଘନତ୍ୱର ଚାରି ଗୁଣରୁ ଅଧିକ, ତଥାପି ସାମାଜିକ ବିକାଶ ଦୃଷ୍ଟିରୁ ତୁଳନା କଲେ ଯୁକ୍ତରାଷ୍ଟ୍ର ଆମେରିକା ଚୀନ ଅପେକ୍ଷା ଉଚ୍ଚତର ସ୍ଥିତିରେ ରହିଛି, କାରଣ ଚୀନରେ ଅର୍ଦ୍ଧ-ସାମନ୍ତବାଦୀ ବ୍ୟବସ୍ଥା ଆହୁରି ପ୍ରଚଳିତ ଅଛି, ଅଥଚ ଯୁକ୍ତରାଷ୍ଟ୍ର ଆମେରିକା ବହୁ ଆଗରୁ ପୁଞ୍ଜିବାଦୀ ବିକାଶର ଚରମ ସ୍ତରରେ ପହଞ୍ଚି ସାରିଛି । ବେଲ୍‌ଜିୟମ୍‌ର ଜନସଂଖ୍ୟାର ଘନତ୍ୱ ଯୁକ୍ତରାଷ୍ଟ୍ର ଆମେରିକାର ଜନସଂଖ୍ୟାର ଘନତ୍ୱର ୧୯ ଗୁଣ, ଓ ସୋଭିୟେତ୍ ୟୁନିଅନ୍‌ର ଜନସଂଖ୍ୟାର ଘନତ୍ୱର ୨୬ ଗୁଣ । ତଥାପି ସାମାଜିକ ବିକାଶ ଦୃଷ୍ଟିରୁ ଯୁକ୍ତରାଷ୍ଟ୍ର ଆମେରିକା ବେଲ୍‌ଜିୟମ୍ ଠାରୁ ଉଚ୍ଚତର ସ୍ତରରେ ପହଞ୍ଚିଛି । ସୋଭିୟେତ୍ ୟୁନିଅନ୍ ସଙ୍ଗେ ତୁଳନା କଲେ, ବେଲ୍‌ଜିୟମ୍ ସେହି ଦେଶ ଠାରୁ ପୁରାପରି ଏକ ଐତିହାସିକ

ଯୁଗର ପଛରେ ପଡ଼ିଛି, କାରଣ ବେଲ୍‌ଜିୟମ୍‌ରେ ପୁଞ୍ଜିବାଦୀ ବ୍ୟବସ୍ଥା ପ୍ରଚଳିତ ଅଛି, ଅଥଚ ସୋଭିୟେତ୍ ୟୁନିଅନ୍ ପୁଞ୍ଜିବାଦୀ ବ୍ୟବସ୍ଥାର ପତନ ଘଟେଇ ସମାଜବଦୀ ବ୍ୟବସ୍ଥା ସ୍ଥାପନ କରି ସାରିଛି ।

ଏଥିରୁ ଏହା ନିଷ୍ପନ୍ନ ହୁଏ ଯେ ଜନସଂଖ୍ୟା ବୃଦ୍ଧି ସମାଜର ବିକାଶ ପ୍ରକ୍ରିୟାର ମୂଖ୍ୟ ଶକ୍ତି ନୁହେଁ । ଯେଉଁ ଶକ୍ତି ସମାଜର ଆକୃତିର, ସାମାଜିକ ବ୍ୟବସ୍ଥାର ଚରିତ୍ରର, *ନିର୍ଦ୍ଧାରକ* ହୋଇଥାଏ, ଜନସଂଖ୍ୟା ସେହି ଶକ୍ତି ହୋଇ ପାରେନା ।

କ) ତେବେ, ସମାଜର ବାସ୍ତବ ଜୀବନର ଜଟୀଳ ପରିସ୍ଥିତିଗୁଡ଼ିକ ମଧ୍ୟରେ ମୂଖ୍ୟ ଶକ୍ତି କେଉଁଟା ? - ଯାହା ସମାଜର ଆକୃତିର, ସାମାଜିକ ବ୍ୟବସ୍ଥାର ଚରିତ୍ରର, ଗୋଟିଏ ବ୍ୟବସ୍ଥାରୁ ଅନ୍ୟ ଏକ ବ୍ୟବସ୍ଥାକୁ ସମାଜର ବିକାଶ ପ୍ରକ୍ରିୟାର *ନିର୍ଦ୍ଧାରକ* ହୋଇଥାଏ ?

ଐତିହାସିକ ବସ୍ତୁବାଦ ବିଚାର କରେ ଯେ, ଏହି ଶକ୍ତି ନିହିତ ଥାଏ ମାନବୀୟ ସ୍ଥିତି ପାଇଁ ପ୍ରୟୋଜନ ହେଉଥିବା ***ଜୀବନ ସମ୍ବଳର ସଂଗ୍ରହ ପଦ୍ଧତି*** ରେ, ***ବାସ୍ତବ ମୂଲ୍ୟଗୁଡ଼ିକର ଉତ୍ପାଦନ ଧାରା*** ରେ, ଯାହାରି ସାହାଯ୍ୟରେ ସମାଜର ବିକାଶ ପାଇଁ, ଜୀବନ ଧାରଣ ପାଇଁ ଅପରିହାର୍ଯ୍ୟ, ବାସ୍ତବ ମୂଲ୍ୟଯୁକ୍ତ ବସ୍ତୁସମୂହ - ଖାଦ୍ୟ, ଲୁଗା, ଯୋତା, ଘର, ଜାଳେଣି, ଉତ୍ପାଦନର ମାଧ୍ୟମ, ଇତ୍ୟାଦି - ତିଆରି ହୋଇଥାଏ ।

ବଞ୍ଚିବା ପାଇଁ ଲୋକଙ୍କୁ ଦରକାର ଖାଦ୍ୟ, ଲୁଗାପଟା, ଯୋତା, ଘର, ଜାଳେଣି, ଇତ୍ୟାଦି । ଏହି ବାସ୍ତବ ମୂଲ୍ୟଯୁକ୍ତ ବସ୍ତୁସମୂହକୁ ହାସଲ କରିବା ପାଇଁ ଲୋକମାନେ ସେଗୁଡ଼ିକୁ ଉତ୍ପାଦନ କରିବାକୁ ହେବ। ସେଗୁଡ଼ିକୁ ଉତ୍ପାଦନ କରିବା ପାଇଁ ସେମାନଙ୍କ ନିକଟରେ ଉତ୍ପାଦନର ଯନ୍ତ୍ରପାତି ରହିଥିବା ଆବଶ୍ୟକ - ଯାହା ସାହାଯ୍ୟରେ ସେମାନେ ଖାଦ୍ୟ, ଲୁଗାପଟା, ଯୋତା, ଘର, ଜାଳେଣି, ଇତ୍ୟାଦି ଉତ୍ପାଦନ କରି ପାରିବେ । ଉତ୍ପାଦନର ଯନ୍ତ୍ରପାତିଗୁଡ଼ିକୁ ତିଆରି କରି ସେଗୁଡ଼ିକୁ ବ୍ୟବହାର କରିବା କ୍ଷମତା ସେମାନଙ୍କ ପାଖରେ ରହିଥିବା ଆବଶ୍ୟକ ।

**ଉତ୍ପାଦନର ଯନ୍ତ୍ରପାତି** ସାହାଯ୍ୟରେ ବାସ୍ତବ ମୂଲ୍ୟଯୁକ୍ତ ବସ୍ତୁସମୂହର ଉତ୍ପାଦନ ହୋଇଥାଏ । **ଜନଗଣ** କେତେକ ପରିମାଣର **ଉତ୍ପାଦନ ଅଭିଜ୍ଞତା ଓ ଶ୍ରମ ଦକ୍ଷତା** ଯୋଗୁଁ ଉତ୍ପାଦନର ଯନ୍ତ୍ରପାତିଗୁଡ଼ିକୁ କାମରେ ଲଗାଇ ବାସ୍ତବ ମୂଲ୍ୟଯୁକ୍ତ ବସ୍ତୁସମୂହର ଉତ୍ପାଦନ କରି ଥାଆନ୍ତି । ସମାଜର **ଉତ୍ପାଦିକା ଶକ୍ତି** କହିଲେ ଏହି ଉପାଦାନଗୁଡ଼ିକର ମିଳିତ ଶକ୍ତିକୁ ବୁଝାଇ ଥାଏ ।

କିନ୍ତୁ ଉତ୍ପାଦିକା ଶକ୍ତି ହେଉଛି ଉତ୍ପାଦନର କେବଳ ମାତ୍ର ଗୋଟିଏ ଦିଗ, ସେମିତି ଉତ୍ପାଦନ ପ୍ରଣାଳୀର କେବଳ ମାତ୍ର ଗୋଟିଏ ପାଖ । ଏହି ଦିଗଟି ଯେଉଁ ବସ୍ତୁ ତଥା ପ୍ରକୃତିର ଶକ୍ତିଗୁଡ଼ିକ ସାହାଯ୍ୟରେ ମଣିଷ ବାସ୍ତବ ମୂଲ୍ୟଯୁକ୍ତ ବସ୍ତୁସମୂହକୁ ଉତ୍ପାଦନ କରିଥାଏ, ସେଗୁଡ଼ିକ ସହ ମଣିଷର ସମ୍ପର୍କକୁ ପ୍ରକାଶ କରିଥାଏ । ଉତ୍ପାଦନର ଅନ୍ୟ

ଏକ ଦିଗ, ଉତ୍ପାଦନ ପ୍ରଣାଳୀର ଅନ୍ୟ ଏକ ପାଖ ହେଲା ଉତ୍ପାଦନ ପ୍ରକ୍ରିୟାରେ ମଣିଷମାନଙ୍କ ମଧ୍ୟରେ ଗଢ଼ି ଉଠିଥିବା ପରସ୍ପର ସହ ସମ୍ବନ୍ଧ - **ଉତ୍ପାଦନ ସମ୍ବନ୍ଧ ।** ମଣିଷ ପ୍ରକୃତି ବିରୁଦ୍ଧରେ ସଂଗ୍ରାମ ଜାରି ରଖିଥାଏ ଓ ବାସ୍ତବ ମୂଲ୍ୟଯୁକ୍ତ ବସ୍ତୁସମୂହର ଉତ୍ପାଦନ ପାଇଁ ପ୍ରକୃତିକୁ ବ୍ୟବହାର କରିଥାଏ। କିନ୍ତୁ ତାହା ସେ ପରସ୍ପର ଠାରୁ ବିଚ୍ଛିନ୍ନ ଭାବେ ଏକୁଟିଆ କରେନା, ଅନ୍ୟଙ୍କ ଠାରୁ ଅଲଗା ହୋଇ ବ୍ୟକ୍ତିବିଶେଷ ଭାବେ କରେନା, କରିଥାଏ ସମ୍ମିଳିତ ଭାବେ, ଗୋଷ୍ଠୀ ଭିତରେ, ସମାଜରେ। ତେଣୁ ଉତ୍ପାଦନ ସର୍ବଦା ଓ ସବୁ ପରିସ୍ଥିତିରେ **ସାମାଜିକ** ଉତ୍ପାଦନ ହୋଇଥାଏ । ବାସ୍ତବ ମୂଲ୍ୟଯୁକ୍ତ ବସ୍ତୁସମୂହର ଉତ୍ପାଦନ କାଳରେ ମଣିଷ ଅନ୍ୟ ମଣିଷଙ୍କ ସହ ଉତ୍ପାଦନ ଅନ୍ତର୍ଗତ କୌଣସି ନା କୌଣସି ପ୍ରକାରର ପାରସ୍ପରିକ ସମ୍ବନ୍ଧରେ ଜଡ଼ିତ ହୋଇଯାଏ, କୌଣସି ନା କୌଣସି ପ୍ରକାରର ଉତ୍ପାଦନ ସମ୍ବନ୍ଧରେ ଛନ୍ଦି ହୋଇଯାଏ । ତାହା ଶୋଷଣମୁକ୍ତ ମଣିଷମାନଙ୍କ ମଧ୍ୟରେ ସହଯୋଗ ଓ ପରସ୍ପର ପ୍ରତି ସହାୟତାର ସମ୍ବନ୍ଧ ହୋଇପାରେ, ଅଧିପତି ଓ ଅଧୀନସ୍ଥର ସମ୍ବନ୍ଧ ହୋଇ ପାରେ ଅବା, ପରିଶେଷରେ, ଉତ୍ପାଦନ ସମ୍ବନ୍ଧର ଗୋଟିଏ ଆକାରରୁ ଆଉ ଗୋଟିଏ ଆକାରକୁ ପରିବର୍ତ୍ତନ କାଳର ମଧ୍ୟବର୍ତ୍ତୀ ସମ୍ବନ୍ଧ ହୋଇପାରେ। ଉତ୍ପାଦନ ସମ୍ବନ୍ଧର ଚରିତ୍ର ଯାହା ହେଉନା କାହିଁକି, ସର୍ବଦା ଓ ସବୁ ବ୍ୟବସ୍ଥାରେ, ଉତ୍ପାଦନ କ୍ଷେତ୍ରରେ ସମାଜର ଉତ୍ପାଦିକା ଶକ୍ତିର ଯେତିକିଟା ଆବଶ୍ୟକତା ରହିଛି ଉତ୍ପାଦନ ସମ୍ବନ୍ଧର ମଧ୍ୟ ସେତିକିଟା ଆବଶ୍ୟକତା ରହିଛି ।

ମାର୍କ୍ସ କହନ୍ତି, "ଉତ୍ପାଦନରେ ମଣିଷମାନେ କେବଳ ପ୍ରକୃତିକୁ ପ୍ରଭାବିତ କରି ନଥାନ୍ତି, ପରସ୍ପରକୁ ମଧ୍ୟ ପ୍ରଭାବିତ କରିଥାନ୍ତି। ସେମାନେ କେବଳ ନିର୍ଦ୍ଦିଷ୍ଟ ଭାବର ସହଯୋଗ ଓ ପରସ୍ପର ମଧ୍ୟରେ ନିଜନିଜର କାର୍ଯ୍ୟକଳାପର ଆଦାନପ୍ରଦାନ ଦ୍ୱାରା ହିଁ ଉତ୍ପାଦନ କରିଥାନ୍ତି। ଉତ୍ପାଦନ କରିବା ପାଇଁ ସେମାନେ ପରସ୍ପର ସହ ନିର୍ଦ୍ଦିଷ୍ଟ ସଂଯୋଗ ଓ ସମ୍ବନ୍ଧ ସ୍ଥାପନା କରନ୍ତି ଏବଂ କେବଳ ଏହି ସାମାଜିକ ସଂଯୋଗ ଓ ସମ୍ବନ୍ଧର ପରିଧି ମଧ୍ୟରେ ହିଁ ସେମାନେ ପ୍ରକୃତିକୁ ପ୍ରଭାବିତ କରିଥାନ୍ତି, ସେମାନଙ୍କର ଉତ୍ପାଦନ କାର୍ଯ୍ୟ ଚାଲିଥାଏ।" (Karl Marx, *Selected Works,* Eng. ed., Moscow 1946, Vol. I, p. 211.)

ସୁତରାଂ, ଉତ୍ପାଦନ, ଉତ୍ପାଦନର ପ୍ରଣାଳୀ ସମାଜର ଉତ୍ପାଦିକା ଶକ୍ତି ଓ ମଣିଷର ଉତ୍ପାଦନ ସମ୍ବନ୍ଧ ଉଭୟକୁ ଧାରଣ କରେ । ଏହି ଭାବେ ଉତ୍ପାଦନ ହେଉଛି ବାସ୍ତବ ମୂଲ୍ୟଯୁକ୍ତ ବସ୍ତୁସମୂହର ଉତ୍ପାଦନ ପ୍ରକ୍ରିୟାରେ ଉତ୍ପାଦିକା ଶକ୍ତି ଓ ଉତ୍ପାଦନ ସମ୍ବନ୍ଧ ମଧ୍ୟରେ ଥିବା ଐକ୍ୟଭାବର ପ୍ରତିମୂର୍ତ୍ତୀ ।

**ଖ) ଉତ୍ପାଦନର ପ୍ରଥମ ବୈଶିଷ୍ଟ୍ୟ** ହେଲା ଏହା ଯେ ଉତ୍ପାଦନ କୌଣସି ଏକ ନିର୍ଦ୍ଦିଷ୍ଟ ସ୍ଥିତିରେ ବହୁ ସମୟ ଧରି ରହି ଯାଏନି ଏବଂ ସର୍ବଦା ବିକାଶ ଓ ପରିବର୍ତ୍ତନର ସ୍ଥିତିରେ ହିଁ ରହିଥାଏ। କେବଳ ସେତିକି ନୁହେଁ, ଉତ୍ପାଦନ ପ୍ରଣାଳୀର ପରିବର୍ତ୍ତନ ଅନିବାର୍ଯ୍ୟ ଭାବେ ସମଗ୍ର

ସାମାଜିକ ବ୍ୟବସ୍ଥାକୁ, ସାମାଜିକ ଧାରଣାକୁ, ରାଜନୈତିକ ମତାମତକୁ ପରିବର୍ତ୍ତନ କରିବା ପାଇଁ ବାଧ କରିଥାଏ - ସମଗ୍ର ସାମାଜିକ ଓ ରାଜନୈତିକ ଢାଞ୍ଚାକୁ ପୁନର୍ଗଠନ କରିବା ପାଇଁ ବାଧ କରିଥାଏ । ବିକାଶର ବିଭିନ୍ନ ସ୍ତରରେ ଲୋକେ ବିଭିନ୍ନ ଉତ୍ପାଦନ ପ୍ରଣାଳୀକୁ ବ୍ୟବହାର କରିଥାନ୍ତି । ଆହୁରି ଅଧିକ ସ୍ଥୂଳ ଭାଷାରେ କହିଲେ, ବିକାଶର ବିଭିନ୍ନ ସ୍ତରରେ ସେମାନେ ବିଭିନ୍ନ ଶୈଳୀର ଜୀବନ ଯାପନ କରିଥାନ୍ତି । ଆଦିମ ଗୋଷ୍ଠୀୟ ବ୍ୟବସ୍ଥାରେ ଉତ୍ପାଦନ ପ୍ରଣାଳୀ ଗୋଟିଏ ଧରଣର ଥିବା ବେଳେ ଦାସ ବ୍ୟବସ୍ଥାରେ ଉତ୍ପାଦନ ପ୍ରଣାଳୀ ହୋଇଥାଏ ଅନ୍ୟ ଧରଣର, ସାମନ୍ତବାଦୀ ବ୍ୟବସ୍ଥାରେ ଉତ୍ପାଦନ ପ୍ରଣାଳୀ ପୁଣି ଆଉ ଏକ ତୃତୀୟ ଧରଣର, ଓ ସେହି ପ୍ରକାରେ ଅନ୍ୟ ସବୁ ବ୍ୟବସ୍ଥାରେ । ଏବଂ ସେହି ଅନୁସାରେ, ମଣିଷର ସାମାଜିକ ବ୍ୟବସ୍ଥାରେ, ସମାନଙ୍କର ଆଧାତ୍ମିକ ବା ମାନସିକ (spiritual) ଜୀବନରେ, ମତାମତରେ ଓ ରାଜନୈତିକ ଅନୁଷ୍ଠାନଗୁଡ଼ିକରେ ପରିବର୍ତ୍ତନ ଘଟିଥାଏ ।

ଗୋଟିଏ ସମାଜର ଉତ୍ପାଦନ ପ୍ରଣାଳୀ ଯାହା ବି ହେଇ ଥାଉନା କାହିଁକି, ମୁଖ୍ୟତଃ ତାହାରି ଅନୁରୂପରେ ଖୋଦ୍ ସମାଜଟି, ତାହାର ଧାରଣା ଓ ତତ୍ତ୍ୱସମୂହ, ତାହାର ମତାମତ ଓ ଅନୁଷ୍ଠାନଗୁଡ଼ିକ ହୋଇଥାଏ ।

ଅବା, ଆହୁରି ଅଧିକ ସ୍ଥୂଳ ଭାଷାରେ କହିଲେ, ମଣିଷର ଜୀବନ ଶୈଳୀ ଯାହା ବି ହେଇ ଥାଉନା କାହିଁକି, ତାକୁ ଧରି ତାର ଚିନ୍ତା ଶୈଳୀ ହୋଇଥାଏ ।

ଏହାର ଅର୍ଥ ହେଲା: ସମାଜର ବିକାଶର ଇତିହାସ ହେଉଛି, ପ୍ରଥମତଃ, ଉତ୍ପାଦନର ବିକାଶର ଇତିହାସ, ଶହ ଶହ ବର୍ଷ ମଧ୍ୟରେ ଗୋଟିକ ପରେ ଆଉ ଗୋଟିଏ ରୀତିରେ ଦେଖା ଦେଇଥିବା ଉତ୍ପାଦନ ପ୍ରଣାଳୀର ଇତିହାସ, ଉତ୍ପାଦିକା ଶକ୍ତିର ବିକାଶର ତଥା ମଣିଷମାନଙ୍କ ମଧ୍ୟରେ ଦେଖା ଦେଇଥିବା ଉତ୍ପାଦନ ସମ୍ବନ୍ଧର ଇତିହାସ ।

ଏଣୁ, ସାମାଜିକ ବିକାଶର ଇତିହାସ କହିଲେ ଖୋଦ୍ ମୂଲ୍ୟଯୁକ୍ତ ବସ୍ତୁଗୁଡ଼ିକୁ ଉତ୍ପାଦନ କରୁଥିବା ମଣିଷମାନଙ୍କର ଇତିହାସକୁ ବୁଝାଏ, ସମାଜର ସ୍ଥିତି ପାଇଁ ଆବଶ୍ୟକ ଥିବା ମୂଲ୍ୟଯୁକ୍ତ ବସ୍ତୁଗୁଡ଼ିକୁ ଉତ୍ପାଦନ କରୁଥିବା ଓ ଉତ୍ପାଦନ ପ୍ରଣାଳୀର ମୁଖ୍ୟ ଶକ୍ତି, ଶ୍ରମଜୀବୀ ଜନଗଣଙ୍କର ଇତିହାସକୁ ବୁଝାଏ ।

ଏଣୁ, ଇତିହାସ ବିଜ୍ଞାନକୁ ଏକ ଯଥାର୍ଥ ବିଜ୍ଞାନ ହେବାକୁ ହେଲେ, ସାମାଜିକ ବିକାଶର ଇତିହାସକୁ ନ୍ୟୁନ କରି ଆଉ ଏଣିକି ରାଜା ଓ ସେନାପତିମାନଙ୍କ କାର୍ଯ୍ୟକଳାପର, ରାଜ୍ୟର "ବିଜେତା" ତଥା "ଦମନକାରୀ"ମାନଙ୍କର କାର୍ଯ୍ୟକଳାପର ଇତିହାସ ନ ହୋଇ, ଏହାକୁ ଉତ୍ସର୍ଗୀକୃତ ଭାବେ ସର୍ବ ପ୍ରଥମେ ମୂଲ୍ୟଯୁକ୍ତ ବସ୍ତୁଗୁଡ଼ିକର ଉତ୍ପାଦନକାରୀମାନଙ୍କର ଇତିହାସ, ଶ୍ରମଜୀବୀ ଜନଗଣଙ୍କର ଇତିହାସ, ଲୋକଙ୍କର ଇତିହାସ ହେବା ଆବଶ୍ୟକ ।

ଏଣୁ, ସମାଜର ଇତିହାସର ନିୟମଗୁଡ଼ିକର ଅଧ୍ୟୟନ ପାଇଁ ଖିଅ ମଣିଷର ମନ ମଧ୍ୟରେ ଖୋଜିଲେ ହେବନି, ସମାଜର ମତାମତ ଓ ଧାରଣାସମୂହରେ ଖୋଜିଲେ ହେବନି ।

ବରଂ କୌଣସି ଏକ ନିର୍ଦ୍ଦିଷ୍ଟ ଐତିହାସିକ ଯୁଗର ସମାଜ ଦ୍ୱାରା ବ୍ୟବହୃତ ହୋଇଥିବା ଉତ୍ପାଦନ ପ୍ରଣାଳୀ ଭିତରେ ଖୋଜିବାକୁ ହେବ, ସମାଜର ଅର୍ଥନୈତିକ ଜୀବନ ମଧ୍ୟରେ ଖୋଜିବାକୁ ହେବ ।

ଏଣୁ, ଉତ୍ପାଦନର ନିୟମାବଳୀ, ଉତ୍ପାଦିକା ଶକ୍ତି ଓ ଉତ୍ପାଦନ ସମ୍ବନ୍ଧର ବିକାଶର ନିୟମାବଳୀ, ସମାଜର ଅର୍ଥନୈତିକ ବିକାଶର ନିୟମାବଳୀର ଅଧ୍ୟୟନ ଓ ଉନ୍ମୋଚନ କରିବା ହେଲା ଇତିହାସ ବିଜ୍ଞାନର ମୂଖ୍ୟ କାର୍ଯ୍ୟ ।

ଏଣୁ, ସର୍ବହରା ଶ୍ରେଣୀର ପାର୍ଟିକୁ ଏକ ଯଥାର୍ଥ ପାର୍ଟି ହେବାକୁ ହେଲେ, ତାକୁ, ସର୍ବ ପ୍ରଥମେ, ଉତ୍ପାଦନର ବିକାଶର ନିୟମାବଳୀର, ସମାଜର ଅର୍ଥନୈତିକ ବିକାଶର ନିୟମାବଳୀର ଜ୍ଞାନ ହାସଲ କରିବାକୁ ହେବ ।

ଏଣୁ, ସର୍ବହରା ଶ୍ରେଣୀର ପାର୍ଟି ଯଦି ନୀତିଗତ ଭୁଲ କରିବା ପାଇଁ ଚାହୁଁନି, ତେବେ ମୂଖ୍ୟତଃ ଉତ୍ପାଦନର ବିକାଶର ନିୟମାବଳୀ, ସମାଜର ଅର୍ଥନୈତିକ ବିକାଶର ନିୟମାବଳୀ ଅନୁସାରେ ହିଁ ତାର କାର୍ଯ୍ୟକ୍ରମର ଚିଠା କରିବାକୁ ହେବ ଓ ତାର ପ୍ରୟୋଗାତ୍ମକ କାର୍ଯ୍ୟକଳାପକୁ ପରିଚାଳନା କରିବାକୁ ହେବ ।

ଗ) ***ଉତ୍ପାଦନର ଦ୍ୱିତୀୟ ବୈଶିଷ୍ଟ୍ୟ*** ହେଲା ଏହା ଯେ ଏହାର ପରିବର୍ତ୍ତନ ଓ ବିକାଶ ସର୍ବଦା ଉତ୍ପାଦିକା ଶକ୍ତିର ପରିବର୍ତ୍ତନ ଓ ବିକାଶ ଠାରୁ, ମୂଳତଃ ଉତ୍ପାଦନର ଯନ୍ତ୍ରପାତିର ପରିବର୍ତ୍ତନ ଓ ବିକାଶ ଠାରୁ ହିଁ ଆରମ୍ଭ ହୋଇଥାଏ। ତେଣୁ ଉତ୍ପାଦିକା ଶକ୍ତି ଉତ୍ପାଦନର ଅତ୍ୟନ୍ତ ଗତିଶୀଳ ଓ ବୈପ୍ଳବିକ ଉପାଦାନ ଅଟେ। ପ୍ରଥମେ, ସମାଜର ଉତ୍ପାଦିକା ଶକ୍ତିର ପରିବର୍ତ୍ତନ ଓ ବିକାଶ ହୋଇଥାଏ ଏବଂ ଏହି ପରିବର୍ତ୍ତନ ଉପରେ ***ନିର୍ଭରଶୀଳ ହୋଇ*** ତଥା ***ତାହା ସହ ସଙ୍ଗତି ରକ୍ଷାକରି*** ମଣିଷର ଉତ୍ପାଦନ ସମ୍ବନ୍ଧର, ସେମାନଙ୍କର ଅର୍ଥନୈତିକ ସମ୍ପର୍କର ପରିବର୍ତ୍ତନ ହୁଏ । ତଥାପି ଏହାର ଅର୍ଥ ଏୟା ନୁହେଁ ଯେ ଉତ୍ପାଦନର ସମ୍ବନ୍ଧ ଉତ୍ପାଦିକା ଶକ୍ତିକୁ ପ୍ରଭାବିତ କରେନା ଏବଂ ଉତ୍ପାଦିକା ଶକ୍ତି ଉତ୍ପାଦନର ସମ୍ବନ୍ଧ ଉପରେ ନିର୍ଭରଶୀଳ ନୁହେଁ । ତାର ବିକାଶ ଉତ୍ପାଦିକା ଶକ୍ତିର ବିକାଶ ଉପରେ ନିର୍ଭର କରୁଥିବା ବେଳେ ଉତ୍ପାଦନର ସମ୍ବନ୍ଧ ତାର ପାଳି ଅନୁସାରେ ଉତ୍ପାଦିକା ଶକ୍ତିର ବିକାଶ ପ୍ରକ୍ରିୟା ଉପରେ ପ୍ରତିକ୍ରିୟା ସୃଷ୍ଟି କରେ - ତାକୁ ତ୍ୱରାନ୍ୱୀତ କରେ ଅବା ବାଧା ଦିଏ । ଏହି ସମ୍ପର୍କରେ ଏହା ମନେ ରଖିବା କଥା ଯେ ଉତ୍ପାଦନର ସମ୍ବନ୍ଧ ଦୀର୍ଘ କାଳ ଧରି ଉତ୍ପାଦିକା ଶକ୍ତିର ବିକାଶର ପଛରେ ପଡ଼ି ରହିବନି କି ତାହା ସହ ଏକ ଦ୍ୱନ୍ଦ୍ୱର ସ୍ଥିତିରେ ରହିବନି, କାରଣ ଉତ୍ପାଦିକା ଶକ୍ତିର ପୂର୍ଣ୍ଣ ମାତ୍ରାର ବିକାଶ ସମ୍ଭବ କେବଳ ସେତେବେଳେ, ଯେତେବେଳେ ଉତ୍ପାଦନର ସମ୍ବନ୍ଧ ଉତ୍ପାଦିକା ଶକ୍ତିର ଚରିତ୍ର ଓ ସ୍ଥିତିର ଅନୁରୂପ ହେବ ଏବଂ ତାହାର ବିକାଶ ପାଇଁ ପର୍ଯ୍ୟାପ୍ତ ସୁଯୋଗ ସୃଷ୍ଟି କରିବ। ତେଣୁ, ଉତ୍ପାଦନର ସମ୍ବନ୍ଧ ଉତ୍ପାଦିକା ଶକ୍ତିର ବିକାଶର ଯେତେ ପଛରେ ପଡ଼ି ଥାଉନା କାହିଁକି ତକ୍ଷଣେ ହେଉ ବା ପରେ ହେଉ ତାହା ଉତ୍ପାଦିକା ଶକ୍ତିର ବିକାଶର

ସ୍ତରର, ଉତ୍ପାଦିକା ଶକ୍ତିର ଚରିତ୍ରର ଅନୁରୂପ ହେବାକୁ ବାଧ୍ୟ - ଏବଂ ବାସ୍ତବରେ ମଧ୍ୟ ତାହା ତାହାର ଅନୁରୂପ ହୋଇଥାଏ । ଅନ୍ୟଥା ଉତ୍ପାଦନ ବ୍ୟବସ୍ଥା ଭିତରେ ଉତ୍ପାଦିକା ଶକ୍ତି ଓ ଉତ୍ପାଦନର ସମ୍ବନ୍ଧ ମଧ୍ୟରେ ଥିବା ଐକ୍ୟର ଭିତ୍ତିଗତ ଲଙ୍ଘନ ହେବ, ସମଗ୍ର ଉତ୍ପାଦନ ବ୍ୟବସ୍ଥାରେ ବିଶୃଙ୍ଖଳା ଦେଖାଦେବ, ଉତ୍ପାଦନ ସଙ୍କଟାପନ୍ନ ହେବ, ଉତ୍ପାଦିକା ଶକ୍ତିର ଧ୍ୱଂସ ସାଧନ ହେବ ।

ଉତ୍ପାଦନର ସମ୍ବନ୍ଧ ଉତ୍ପାଦିକା ଶକ୍ତିର ଚରିତ୍ରର ଅନୁରୂପ ହେଉ ନଥିବା, ତା ସହ ସଂଘର୍ଷରତ ଥିବା ଅବସ୍ଥାର ଉଦାହରଣ ହେଉଛି ପୁଞ୍ଜିବାଦୀ ଦେଶଗୁଡ଼ିକର ଅର୍ଥନୈତିକ ସଙ୍କଟ, ଯେଉଁଠି ଉତ୍ପାଦନର ସାଧନଗୁଡ଼ିକର ବ୍ୟକ୍ତିଗତ ପୁଞ୍ଜିବାଦୀ ମାଲିକାନା ଓ ଉତ୍ପାଦନ ପ୍ରକ୍ରିୟାର ସାମାଜିକ ଚରିତ୍ର, ଉତ୍ପାଦିକା ଶକ୍ତିର ଚରିତ୍ର ମଧ୍ୟରେ ଥିବା ଅସାମଞ୍ଜସ୍ୟତା ଅତି ସୁସ୍ପଷ୍ଟ । ଏହାର ପରିଣତି ହେଉଛି ଅର୍ଥନୈତିକ ସଙ୍କଟ, ଯାହା ଉତ୍ପାଦିକା ଶକ୍ତିକୁ ଧ୍ୱଂସ ବାଟରେ ନିଏ । ପୁଣି, ଏହି ଅସାମଞ୍ଜସ୍ୟତା ହିଁ ସାମାଜିକ ବିପ୍ଳବର ଅର୍ଥନୈତିକ ଭିତ୍ତି ହୋଇଥାଏ । ସାମାଜିକ ବିପ୍ଳବର ଉଦ୍ଦେଶ୍ୟ ହେଉଛି ଉତ୍ପାଦନର ପ୍ରଚଳିତ ସମ୍ବନ୍ଧଗୁଡ଼ିକୁ ଭାଙ୍ଗି ଉତ୍ପାଦିକା ଶକ୍ତିର ଚରିତ୍ର ଅନୁରୂପ ଉତ୍ପାଦନର ନୂଆ ସମ୍ବନ୍ଧଗୁଡ଼ିକୁ ସୃଷ୍ଟି କରିବା, ସ୍ଥାପନ କରିବା ।

ତାର ବିପରୀତରେ, ଉତ୍ପାଦନର ସମ୍ବନ୍ଧ ଉତ୍ପାଦିକା ଶକ୍ତିର ଚରିତ୍ରର ସମ୍ପୂର୍ଣ୍ଣ ରୂପେ ଅନୁରୂପ ଥିବା ଅବସ୍ଥାର ଉଦାହରଣ ହେଉଛି ସୋଭିୟେତ୍ ୟୁନିଅନ୍‌ର ସମାଜବାଦୀ ଜାତୀୟ ଅର୍ଥନୀତି, ଯେଉଁଠି ଉତ୍ପାଦନର ସାଧନଗୁଡ଼ିକର ସାମାଜିକ ମାଲିକାନା ଉତ୍ପାଦନ ପ୍ରକ୍ରିୟାର ସାମାଜିକ ଚରିତ୍ରର ସମ୍ପୂର୍ଣ୍ଣ ଅନୁରୂପ ହୋଇଛି, ଏବଂ ଯେଉଁଠି, ଏହି କାରଣରୁ, ଅର୍ଥନୈତିକ ସଙ୍କଟ ଓ ଉତ୍ପାଦିକା ଶକ୍ତିର ବିନାଶ ଭଳି ଘଟଣାମାନ ଦେଖା ଦେଉନି ।

ଫଳରେ, ଉତ୍ପାଦନରେ ଉତ୍ପାଦିକା ଶକ୍ତି କେବଳ ଅତ୍ୟନ୍ତ ଗତିଶୀଳ ଓ ବୈପ୍ଳବିକ ଉପାଦାନ ନୁହେଁ, ଉତ୍ପାଦନର ବିକାଶ ପ୍ରକ୍ରିୟାର ନିର୍ଦ୍ଧାରକ ଉପାଦାନ ମଧ୍ୟ ।

ଉତ୍ପାଦିକା ଶକ୍ତି ଯାହା ହେଇ ଥାଉନା କାହିଁକି ଉତ୍ପାଦନର ସମ୍ବନ୍ଧ ତାହାର ଅନୁରୂପ ହିଁ ହେବାକୁ ବାଧ୍ୟ ।

କେଉଁ ଉତ୍ପାଦନ ଯନ୍ତ୍ରପାତି ସାହାଯ୍ୟରେ ମଣିଷମାନେ ସେମାନଙ୍କର ଆବଶ୍ୟକୀୟ ବାସ୍ତବ ମୂଲ୍ୟଯୁକ୍ତ ବସ୍ତୁଗୁଡ଼ିକୁ ଉତ୍ପାଦନ କରନ୍ତି ? - ଏଭଳି ପ୍ରଶ୍ନର ଉତ୍ତର ଉତ୍ପାଦିକା ଶକ୍ତିଗୁଡ଼ିକ ଦେଉଥିଲା ବେଳେ ଅନ୍ୟ ଏକ ପ୍ରଶ୍ନର ଉତ୍ତର ଦେଇଥାଏ ଉତ୍ପାଦନର ସମ୍ବନ୍ଧ। ଆଉ ସେଇ ପ୍ରଶ୍ନଟି ହେଲା - ଉତ୍ପାଦନର ସାଧନ (ଜମି, ଜଙ୍ଗଲ, ଜଳ, ଖଣିଜ ସମ୍ପଦ, କଞ୍ଚାମାଲ, ଉତ୍ପାଦନ ଯନ୍ତ୍ରପାତି, ଉତ୍ପାଦନ ପାଇଁ ଆବଶ୍ୟକୀୟ ଘରବାଡ଼ି, ପରିବହନ ଓ ଯୋଗାଯୋଗର ସାଧନ, ଇତ୍ୟାଦି) ର ମାଲିକ କିଏ, ଉତ୍ପାଦନର ସାଧନ ଉପରେ କର୍ତ୍ତୃତ୍ୱ କାହାର, ସମଗ୍ର ସମାଜର, ନା ବ୍ୟକ୍ତି ବିଶେଷର, ନା ଗୋଷ୍ଠୀର, ନା

ଶ୍ରେଣୀର ଯେଉଁମାନେ ତାକୁ ବ୍ୟବହାର କରି ଅନ୍ୟ ବ୍ୟକ୍ତି ବିଶେଷ, ଗୋଷ୍ଠୀ, ଶ୍ରେଣୀକୁ ଶୋଷଣ କରନ୍ତି ?

ଉତ୍ପାଦିକା ଶକ୍ତିର ପ୍ରାଚୀନ କାଳରୁ ଆଜିଯାଏଁ ହୋଇଥିବା ବିକାଶର ଏକ ସ୍ଥୂଳ ଚିତ୍ର ଏଠାରେ ଦିଆ ଯାଉଛି । ଆବଡ଼ା ଖାବଡ଼ା ପଥର ହତିଆରର ପରିବର୍ତ୍ତନ ହେଲା ଧନୁ ଓ ଶରକୁ, ଏବଂ ସେହି ପରିବର୍ତ୍ତନର ସହଯୋଗୀ ହିସାବରେ ଶିକାରୀ ଜୀବନର ପରିବର୍ତ୍ତନ ହେଲା ପଶୁପାଳକ ଓ ଆଦିମ ପଶୁଚାରକ ଜୀବନକୁ। ହତିଆର କ୍ଷେତ୍ରରେ ପଥର ହତିଆରର ପରିବର୍ତ୍ତନ ଧାତୁ ହତିଆର (ଲୁହା କୁରାଢ଼ି, ଲୁହା ଫାଳ ଖଞ୍ଜା କାଠ ଲଙ୍ଗଳ, ଇତ୍ୟାଦି) କୁ ହେବା ସଙ୍ଗେ ସଙ୍ଗେ ଜୀବନ କ୍ଷେତ୍ରରେ ମଧ୍ୟ ପରିବର୍ତ୍ତନ ଘଟି ତାହା ଚାଷୀ ଓ କୃଷକର ଜୀବନ ହେଲା । ଅନ୍ୟାନ୍ୟ ବସ୍ତୁକୁ ତିଆରି କରିବା ପାଇଁ ଧାତୁ ନିର୍ମିତ ହାତ ହତିଆରର ଉନ୍ନତି ଘଟିଲା । କମାରଶାଳରେ ଭାତିର ପ୍ରଚଳନ ହେଲା । କୁମ୍ଭାରଶାଳ ଓ ମାଟିପାତ୍ରସମୂହର ପ୍ରଚଳନ ହେଲା । ହସ୍ତଶିଳ୍ପରେ ଅନୁରୂପ ଉନ୍ନତି ଘଟିଲା ।

କାଳକ୍ରମେ କୃଷିରୁ ହସ୍ତଶିଳ୍ପ ଅଲଗା ହେଲା ଓ ତାର ସ୍ୱାଧୀନ ବିକାଶ ଘଟିଲା । ତାର ପରିଣତିରେ, କୁଟୀରଶିଳ୍ପ, କ୍ଷୁଦ୍ରଶିଳ୍ପ (manufacture) ର ବିକାଶ ହେଲା । ହସ୍ତଶିଳ୍ପ ହାତ ହତିଆରର ପରିବର୍ତ୍ତନ ଘଟି ମେସିନ୍ ହେଲା । ହସ୍ତଶିଳ୍ପ ଓ କୁଟୀରଶିଳ୍ପର ରୂପାନ୍ତର ଘଟି ମେସିନ୍ ଶିଳ୍ପ ଦେଖା ଦେଲା । ତାହା ମେସିନ୍ ବ୍ୟବସ୍ଥାକୁ ପରିବର୍ତ୍ତିତ ହୋଇ ଆଜିର ଆଧୁନିକ ବୃହତ୍ ଆକାରର ଶିଳ୍ପମାନ ଗଢ଼ି ଉଠିଛି । - ଏହା ହିଁ ହେଉଛି ମଣିଷର ଇତିହାସ ପଥରେ ସମାଜର ଉତ୍ପାଦିକା ଶକ୍ତିସମୂହର ବିକାଶର ସାଧାରଣ, ଅଥଚ୍ ବହୁଳ ଭାବରେ ଅସମ୍ପୂର୍ଣ୍ଣ, ଚିତ୍ର ।

ଏଥିରୁ ସ୍ପଷ୍ଟ ଜଣା ପଡ଼େ ଯେ, ଉତ୍ପାଦନର ଯନ୍ତ୍ରପାତିର ବିକାଶ ଓ ଉନ୍ନତି ଉତ୍ପାଦନ ସହ ସଂଶ୍ଳିଷ୍ଟ ମଣିଷମାନଙ୍କ ଯୋଗୁଁ ହିଁ ହୋଇଥିଲା - ମଣିଷମାନଙ୍କ ଠୁଁ ସ୍ୱତନ୍ତ୍ର ଭାବେ ନୁହେଁ । ଫଳରେ, ଉତ୍ପାଦନର ଯନ୍ତ୍ରପାତିର ବିକାଶ ଓ ଉନ୍ନତି ସହ ତାଳ ଦେଇ ଉତ୍ପାଦିକା ଶକ୍ତିର ଏକ ଅତି ମୁଖ୍ୟ ଉପାଦାନ ହିସାବରେ ମଣିଷମାନଙ୍କର ମଧ୍ୟ ବିକାଶ ଓ ଉନ୍ନତି ହୋଇଥିଲା । ସେମାନଙ୍କର ଉତ୍ପାଦନ ଅଭିଜ୍ଞତାରେ, ସେମାନଙ୍କର ଶ୍ରମ ଦକ୍ଷତାରେ, ଉତ୍ପାଦନର ଯନ୍ତ୍ରପାତିକୁ କାମରେ ଲଗାଇବା ପାଇଁ ସେମାନଙ୍କର ସକ୍ଷମତାରେ ପରିବର୍ତ୍ତନ ଓ ବିକାଶ ଜରିଆରେ ସେମାନଙ୍କର ବିକାଶ ଓ ଉନ୍ନତି ହୋଇଥିଲା ।

ଇତିହାସର ଗତିପଥରେ ସମାଜର ଉତ୍ପାଦିକା ଶକ୍ତିର ପରିବର୍ତ୍ତନ ଓ ବିକାଶ ସହ ତାଳ ଦେଇ ମଣିଷର ଉତ୍ପାଦନ ସମ୍ବନ୍ଧର, ଅର୍ଥନୈତିକ ସମ୍ପର୍କର ମଧ୍ୟ ପରିବର୍ତ୍ତନ ଓ ବିକାଶ ହୋଇଥିଲା ।

ଇତିହାସରେ ଆମେ ପାଞ୍ଚଟି ମୁଖ୍ୟ ଧରଣର ଉତ୍ପାଦନ ସମ୍ବନ୍ଧ ଦେଖିବାକୁ ପାଉ: ଆଦିମ ଗୋଷ୍ଠୀଗତ, ଦାସପ୍ରଥାଗତ, ସାମନ୍ତବାଦୀ, ପୁଞ୍ଜିବାଦୀ ଓ ସମାଜବାଦୀ ।

ଆଦିମ ଗୋଷ୍ଠୀଗତ ବ୍ୟବସ୍ଥାରେ ଉତ୍ପାଦନର ସାଧନଗୁଡ଼ିକ ସାମାଜିକ ମାଲିକାନାରେ ଥିଲା ଓ ଏହା ହିଁ ଥିଲା ସେହି ସମାଜର ଉତ୍ପାଦନ ସମ୍ବନ୍ଧର ଭିତ୍ତି । ମୋଟ ଉପରେ, ଏହା ସେହି ଯୁଗର ଉତ୍ପାଦିକା ଶକ୍ତିର ଚରିତ୍ରର ଅନୁରୂପ ଅଟେ । ପଥରର ହତିଆର ଏବଂ, ପରେ, ଧନୁ ଓ ଶର ସାହାଯ୍ୟରେ ବ୍ୟକ୍ତିଗତ ଭାବେ, ଏକାକୀ, ପ୍ରକୃତି ଓ ହିଂସ୍ରଜନ୍ତୁଙ୍କର ପରାକ୍ରମକୁ ପ୍ରତିହତ କରିବା ଅସମ୍ଭବ ଥିଲା । ଯେହେତୁ ସେମାନେ କ୍ଷୁଧାର, ହିଂସ୍ରଜନ୍ତୁଙ୍କର ଅବା ପଡ଼ୋଶୀ ସମାଜର ଶିକାର ହେବା ପାଇଁ ଚାହିଁ ନଥିଲେ, ତେଣୁ ଜଙ୍ଗଲର ଫଳମୂଳ ସଂଗ୍ରହ କରିବା ପାଇଁ, ମାଛ ଧରିବା ପାଇଁ, କୌଣସି ନା କୌଣସି ପ୍ରକାରର ବାସଗୃହ ନିର୍ମାଣ କରିବା ପାଇଁ ମିଳିମିଶି ଏକାଠି କାମ କରିବା ପାଇଁ ସେମାନେ ବାଧ୍ୟ ହୋଇଥିଲେ । ସାମୁହିକ ଶ୍ରମ ଯୋଗୁଁ ଉତ୍ପାଦନର ଫଳ ସଙ୍ଗେ ସଙ୍ଗେ ଉତ୍ପାଦନର ସାଧନ ମଧ୍ୟ ସାମାଜିକ ମାଲିକାନାରେ ଥିଲା । ଏଠି ବ୍ୟକ୍ତିଗତ ମାଲିକାନାରେ ଥିବା କେତେକ ହତିଆରକୁ - ଯାହା ଉତ୍ପାଦନର ସାଧନ ହେବା ସଙ୍ଗେ ସଙ୍ଗେ ହିଂସ୍ରଜନ୍ତୁଙ୍କ ଠୁଁ ଆତ୍ମରକ୍ଷାର ସାଧନ ଥିଲା, ତାକୁ - ଛାଡ଼ି ଦେଲେ, ଉତ୍ପାଦନର ସାଧନର ବ୍ୟକ୍ତିଗତ ମାଲିକାନା ରୂପକ ଅବଧାରଣାଟି ହିଁ ନଥିଲା । ଏଠି ଶୋଷଣ ନଥିଲା କି ବିଭିନ୍ନ ଶ୍ରେଣୀ ନଥିଲା ।

ଦାସ ବ୍ୟବସ୍ଥାରେ ଉତ୍ପାଦନ ସମ୍ବନ୍ଧର ଭିତ୍ତି ଏହା ଥିଲା ଯେ ଉତ୍ପାଦନର ସାଧନଗୁଡ଼ିକର ମାଲିକ ଥିଲା ଦାସମାନଙ୍କ ପ୍ରଭୁ। ଉତ୍ପାଦନରେ ଲିପ୍ତ ଥିବା ଶ୍ରମିକର, ଦାସର ମଧ୍ୟ ସେ ମାଲିକ ଥିଲା ଯାହାକୁ ସେ ବିକି ପାରୁଥିଲା, କିଣି ପାରୁଥିଲା, ମାରି ଦେଇ ବି ପାରୁଥିଲା, ସତେ ଯେମିତି ଦାସଟି ଏକ ପଶୁ ଥିଲା । ମୋଟାମୋଟି ଭାବେ କହିଲେ, ଏହି ଧରଣର ଉତ୍ପାଦନ ସମ୍ବନ୍ଧ ସେହି ସମୟର ଉତ୍ପାଦିକା ଶକ୍ତିଗୁଡ଼ିକର ସ୍ଥିତିର ଅନୁରୂପ ଥିଲା । ପଥରର ହତିଆର ପରିବର୍ତ୍ତେ ମଣିଷ ହାତରେ ବର୍ତ୍ତମାନ ରହିଛି ଧାତୁର ହତିଆର। ଦୁଷ୍ଟ ତଥା ଆଦିମ ଶିକାରୀ ଜୀବନରେ ପଶୁପାଳନ କଅଣ, ପଶୁଚାରଣ କଅଣ ସେ ଜାଣି ନଥିଲା । ଅଥଚ୍ ବର୍ତ୍ତମାନ ଦେଖା ଦେଲାଣି ପଶୁପାଳନ, ପଶୁଚାରଣ, କୃଷି, ହସ୍ତଶିଳ୍ପ, ତଥା ଉତ୍ପାଦନର ଏହି ବିଭାଗଗୁଡ଼ିକର ଭିତ୍ତିରେ ଶ୍ରମର ବିଭାଗୀକରଣ । ବ୍ୟକ୍ତିବିଶେଷଙ୍କ ମଧ୍ୟରେ, ବିଭିନ୍ନ ସମାଜ ମଧ୍ୟରେ ଉତ୍ପାଦିତ ବସ୍ତୁଗୁଡ଼ିକୁ ଅଦଳବଦଳ କରିବା ସମ୍ଭାବନା ଦେଖା ଦେଲା । ଅଳ୍ପ କିଛି ଲୋକ ହାତରେ ସମ୍ପତ୍ତି ଠୁଳ ହେବା ସମ୍ଭାବନା ଦେଖା ଦେବା ସହିତ, ବସ୍ତୁତଃ, ଅଳ୍ପସଂଖ୍ୟକ ଲୋକ ହାତରେ ଉତ୍ପାଦନର ସାଧନ ଠୁଳ ହୋଇଗଲା । ଅଳ୍ପ ସଂଖ୍ୟକ ଲୋକ ବହୁ ସଂଖ୍ୟକ ଲୋକଙ୍କୁ ନିଜ ଅଧୀନରେ ରଖିବା ସମ୍ଭାବନା ଦେଖା ଦେବା ସଙ୍ଗେ ସଙ୍ଗେ ବହୁ ସଂଖ୍ୟକଙ୍କୁ ଦାସରେ ପରିଣତ କରି ଦିଆଗଲା । ଏଠି ଉତ୍ପାଦନ ଧାରାରେ ସମାଜର ସମସ୍ତଙ୍କର ସାମୁହିକ ଓ ମୁକ୍ତ ଶ୍ରମକୁ ଆମେ ଆଉ ଦେଖୁନେ, ତା ପରିବର୍ତ୍ତେ ଦେଖୁଛେ ଦାସମାନଙ୍କର ବାଧ୍ୟତାମୂଳକ ଶ୍ରମ, ଦେଖୁଛେ ସେମାନଙ୍କର ଶ୍ରମ କରୁ ନଥିବା ପ୍ରଭୁମାନଙ୍କ ଦ୍ୱାରା ସେମାନଙ୍କର ଶୋଷଣ । ତେଣୁ ଉତ୍ପାଦନର ସାଧନର ଅବା ଉତ୍ପାଦନର ଫଳର ସାମୁହିକ ମାଲିକାନା ମଧ୍ୟ ଆମେ ଆଉ

ଦେଖୁନେ । ତା ସ୍ଥାନରେ ସ୍ଥାପିତ ହୋଇଛି ବ୍ୟକ୍ତିଗତ ମାଲିକାନା । ସମ୍ପତ୍ତିର ମାଲିକ କହିଲେ ଯାହା ବୁଝେଇ ଥାଏ ପୁରାପୁରି ସେହି ଅର୍ଥରେ ଦାସମାନଙ୍କର ପ୍ରଭୁମାନେ ପ୍ରମୁଖ ଓ ପ୍ରଧାନ ସମ୍ପତ୍ତିର ମାଲିକ ଥିଲେ ।

ଧନୀ ଓ ଗରିବ, ଶୋଷକ ଓ ଶୋଷିତ, ସମ୍ପୂର୍ଣ୍ଣ ଅଧିକାର ଥିବା ଲୋକ ଓ କୌଣସି ଅଧିକାର ନଥିବା ଲୋକ, ତଥା ସେମାନଙ୍କ ମଧ୍ୟରେ ହେଉଥିବା ଭୟଙ୍କର ଶ୍ରେଣୀ ସଂଗ୍ରାମ, ଏହା ହିଁ ହେଉଛି ଦାସ ବ୍ୟବସ୍ଥାର ଛବି ।

ସାମନ୍ତବାଦୀ ବ୍ୟବସ୍ଥାରେ ଉତ୍ପାଦନ ସମ୍ବନ୍ଧର ଭିତ୍ତି ଏହା ଥିଲା ଯେ ଉତ୍ପାଦନର ସାଧନଗୁଡ଼ିକର ମାଲିକ ଥିଲା ସାମନ୍ତବାଦୀ ପ୍ରଭୁ, ଅଥଚ ଉତ୍ପାଦନରେ ଜଡ଼ିତ ଶ୍ରମିକର ସେ ପୁରାପୁରି ମାଲିକ ନଥିଲା - ଏହି ଶ୍ରମିକ ବା ଭୂମିଦାସମାନଙ୍କୁ ସେ ପ୍ରାଣରେ ମାରିପାରୁ ନଥିଲା ସତ, ହେଲେ ବିକାକିଣା କରି ପାରୁଥିଲା । ସାମନ୍ତବାଦୀ ମାଲିକାନାର ପାଖେ ପାଖେ ରହିଥିଲା ଚାଷୀର ବ୍ୟକ୍ତିଗତ ମାଲିକାନା, ରହିଥିଲା ହସ୍ତଶିଳ୍ପୀର ଉତ୍ପାଦନର ହାତ ହତିଆର ଓ ତାର ନିଜ ଶ୍ରମର ଭିତ୍ତି ଉପରେ ଗଢ଼ି ଉଠିଥିବା ବ୍ୟକ୍ତିଗତ ବ୍ୟବସାୟ ।

ଏପରି ଉତ୍ପାଦନ ସମ୍ବନ୍ଧ, ମୋଟ ଉପରେ, ସେହି ଯୁଗର ଉତ୍ପାଦିକା ଶକ୍ତିର ସ୍ଥିତିର ଅନୁରୂପ ଅଟେ। ଖଣିରୁ ଲୁହାପଥର କାଢ଼ିବା, ତାକୁ ତରଳେଇବା ଓ ସେଥିରୁ ବିଭିନ୍ନ ଜିନିଷ ତିଆରି କରିବାରେ ଆହୁରି ଉନ୍ନତି ଘଟିଲା, ଲୁହାଲଙ୍ଗଳ ଓ ତନ୍ତର ପ୍ରସାର ଘଟିଲା, କୃଷି, ଫଳଚାଷ, ଅଙ୍ଗୁରଚାଷ ତଥା ଦୁଗ୍ଧ ଓ ଦୁଗ୍ଧଜାତ ଦ୍ରବ୍ୟର ଉତ୍ପାଦନରେ ଆହୁରି ବିକାଶ ଘଟିଲା, କୁଟୀରଶିଳ୍ପର କାରଖାନା ପାଖେ ପାଖେ କ୍ଷୁଦ୍ରଶିଳ୍ପଗୁଡ଼ିକ ଦେଖା ଦେଲା - ଏହା ହିଁ ହେଉଛି ଉତ୍ପାଦିକା ଶକ୍ତିଗୁଡ଼ିକର ସ୍ଥିତିର ବୈଶିଷ୍ଟ୍ୟମାନ ।

ନୂଆ ଉତ୍ପାଦିକା ଶକ୍ତି ଏହା ଦାବି କରେ ଯେ ଶ୍ରମିକମାନେ ଉତ୍ପାଦନ କ୍ଷେତ୍ରରେ କୌଣସି ନା କୌଣସି ପ୍ରକାରର ନୂଆ ଉଦ୍ୟମ ପ୍ରଦର୍ଶନ କରିବେ, ସେମାନେ କର୍ମପ୍ରବଣ ହେବେ, କାମ ପ୍ରତି ସେମାନଙ୍କର ଆଗ୍ରହ ରହିବ ।

ତେଣୁ ଯେଉଁ ଦାସ ପାଖରେ ଜଣେ ଶ୍ରମିକ ହିସାବରେ କାମ ପାଇଁ ଆଗ୍ରହ ନାହିଁ, ମୋଟେ ଉଦ୍ୟମ ନାହିଁ, ସେପରି ଦାସକୁ ସାମନ୍ତବାଦୀ ପ୍ରଭୁ ଅନାବଶ୍ୟକ ମନେ କରେ ଓ ଯେଉଁ ଭୂମିଦାସ ପାଖରେ ନିଜର ଜମି ରହିଛି, ଚାଷକାର୍ଯ୍ୟ ପାଇଁ ଆବଶ୍ୟକ ଥିବା ସମ୍ବଳ ଓ ଆଗ୍ରହ ରହିଛି ତଥା ତାର ଫସଲର ଏକ ଅଂଶ ଦେୟ ହିସାବରେ ସାମନ୍ତବାଦୀ ପ୍ରଭୁକୁ ଦେବା ପାଇଁ ପ୍ରସ୍ତୁତ ଅଛି, ସାମନ୍ତବାଦୀ ପ୍ରଭୁ ତା ସହିତ କାରବାର କରିବା ପାଇଁ ପସନ୍ଦ କରେ ।

ଏହି ସ୍ତରରେ ବ୍ୟକ୍ତିଗତ ମାଲିକାନାର ଆହୁରି ଅଧିକ ବିକାଶ ଘଟିଛି । ଦାସ ବ୍ୟବସ୍ଥା ଅମଳରେ ଶୋଷଣ ଯେତିକି କଠୋର ଥିଲା - କିଞ୍ଚିତ୍ ମାତ୍ର ପ୍ରଶମିତ ହୋଇଥିବା ସତ୍ତ୍ୱେ - ଏଠି ମଧ୍ୟ ମୋଟାମୋଟି ରୂପେ ସେତିକି କଠୋର ରହିଛି । ଶୋଷକ ଓ ଶୋଷିତ ମଧ୍ୟରେ ଶ୍ରେଣୀ ସଂଗ୍ରାମ ହେଉଛି ସାମନ୍ତବାଦୀ ବ୍ୟବସ୍ଥାର ପ୍ରମୁଖ ବୈଶିଷ୍ଟ୍ୟ ।

ପୁଞ୍ଜିବାଦୀ ବ୍ୟବସ୍ଥା ଅମଳରେ ଉତ୍ପାଦନ ସମ୍ବନ୍ଧର ଭିତ୍ତି ହେଲା ଏହା ଯେ ଏଠି ଉତ୍ପାଦନର ସାଧନଗୁଡ଼ିକର ମାଲିକ ହେଉଛନ୍ତି ପୁଞ୍ଜିପତିମାନେ, ଅଥଚ ଉତ୍ପାଦନରେ ଲିପ୍ତ ଥିବା ଶ୍ରମିକମାନଙ୍କର, ମଜୁରିଆମାନଙ୍କର ମାଲିକ ସେମାନେ ନୁହଁନ୍ତି । ମଜୁରିଆମାନଙ୍କୁ ପୁଞ୍ଜିପତିମାନେ ମାରିଦେଇ ପାରିବେନି କି ବିକି ପାରିବେନି, କାରଣ ବ୍ୟକ୍ତିଗତ ରୂପେ ସେମାନେ ସ୍ୱାଧୀନ ଅଟନ୍ତି । ତଥାପି ସେମାନଙ୍କ ପାଖେ ଉତ୍ପାଦନର ସାଧନ ନଥିବା ଯୋଗୁଁ ଓ କ୍ଷୁଧାଜନିତ ମୃତ୍ୟୁରୁ ବର୍ତ୍ତିବା ପାଇଁ ସେମାନେ ସେମାନଙ୍କର ଶ୍ରମଶକ୍ତିକୁ ପୁଞ୍ଜିପତିଙ୍କୁ ବିକ୍ରି କରି ଶୋଷଣ ରୂପକ ଜୁଆଳିକୁ କାନ୍ଧରେ ବୋହିବା ପାଇଁ ବାଧ୍ୟ ହୋଇଛନ୍ତି ।

ଉତ୍ପାଦନର ସାଧନ କ୍ଷେତ୍ରରେ ଆମେ ପୁଞ୍ଜିପତିଙ୍କ ସମ୍ପତ୍ତି ଦେଖିବା ସଙ୍ଗେ ସଙ୍ଗେ, ତା ପାଖେ ପାଖେ ଚାଷୀ ଓ ହସ୍ତଶିଳ୍ପୀମାନଙ୍କର, ପ୍ରଥମେ ପ୍ରଥମେ ବହୁଳ ଭାବରେ, ବ୍ୟକ୍ତିଗତ ସମ୍ପତ୍ତିକୁ ଦେଖୁ । ଏହି ଚାଷୀ ଓ ହସ୍ତଶିଳ୍ପୀମାନେ ବର୍ତ୍ତମାନ ଆଉ ଭୂମିଦାସ ନୁହଁନ୍ତି ଏବଂ ସେମାନଙ୍କର ବ୍ୟକ୍ତିଗତ ସମ୍ପତ୍ତିର ଭିତ୍ତି ହେଉଛି ସେମାନଙ୍କର ବ୍ୟକ୍ତିଗତ ପରିଶ୍ରମ । ହସ୍ତଶିଳ୍ପୀର ଶାଳ ଓ କ୍ଷୁଦ୍ରଶିଳ୍ପ ବଦଳରେ ଦେଖା ଦିଏ ଯନ୍ତ୍ରପାତିରେ ଭରପୁର୍ ବୃହତ୍ ବୃହତ୍ କଳକାରଖାନା । ଚାଷୀର ପୁରୁଣାକାଳିଆ ଉତ୍ପାଦନ ହାତହତିଆର ସାହାଯ୍ୟରେ ମୁଖ୍ୟତଃ ସାମନ୍ତବାଦୀ ଜମିର ଚାଷ ପରିବର୍ତ୍ତେ ବର୍ତ୍ତମାନ ଦେଖା ଦିଏ କୃଷି ଯନ୍ତ୍ରପାତି ସାହାଯ୍ୟରେ ବୈଜ୍ଞାନିକ ରୀତିରେ ଚାଷ ହେଉଥିବା ପୁଞ୍ଜିବାଦୀ କୃଷିକ୍ଷେତ୍ର ।

ନିଷ୍ପେସିତ ଓ ଅଜ୍ଞ ଭୂମିଦାସଙ୍କ ଅପେକ୍ଷା ଉତ୍ପାଦନରେ ଲିପ୍ତ ଶ୍ରମିକମାନେ ଆହୁରି ଭଲ ଭାବେ ଶିକ୍ଷିତ ଓ ଅଧିକ ବୁଦ୍ଧିମାନ ହେବା, ମେସିନ୍‌କୁ ଭଲ ଭାବେ ବୁଝିବା ତଥା ତାକୁ ଠିକ୍ ଭାବେ ଚଳେଇବା ପାଇଁ ସକ୍ଷମତା ରହିବା କଥା ନୂଆ ଉତ୍ପାଦିକା ଶକ୍ତି ଆବଶ୍ୟକ କରେ । ତେଣୁ ଯେଉଁ ମଜୁରିଆମାନେ ଭୂମିଦାସତ୍ୱରୁ ମୁକ୍ତ ହୋଇଥିବେ ତଥା ମେସିନ୍‌ଗୁଡ଼ିକୁ ସଠିକ୍ ଭାବେ ଚଳେଇବା ପାଇଁ ସକ୍ଷମତା ଦୃଷ୍ଟିରୁ ଯଥେଷ୍ଟ ଶିକ୍ଷା ପାଇଥିବେ, ସେମାନଙ୍କ ସହ କାରବାର କରିବା ପାଇଁ ପୁଞ୍ଜିପତିମାନେ ପସନ୍ଦ କରନ୍ତି ।

କିନ୍ତୁ ଉତ୍ପାଦିକା ଶକ୍ତିଗୁଡ଼ିକୁ ପ୍ରକାଣ୍ଡ ଆକାରକୁ ବିକଶିତ କରି ପୁଞ୍ଜିବାଦ ଦ୍ୱନ୍ଦ୍ୱଜାଲରେ ଛନ୍ଦି ହୋଇ ଯାଇଛି, ଯାହାର ସମାଧାନ କରିବା ତାହା ପକ୍ଷରେ ସମ୍ଭବ ନୁହେଁ। ଅଧିକରୁ ଅଧିକ ପରିମାଣର ପଣ୍ୟଦ୍ରବ୍ୟ ଉତ୍ପାଦନ କରି ଓ ସେଗୁଡ଼ିକର ଦର କମେଇ, ପୁଞ୍ଜିବାଦ ପ୍ରତିଦ୍ୱନ୍ଦ୍ୱିତାକୁ ତୀବ୍ର କରେ, କ୍ଷୁଦ୍ର ଓ ମଧ୍ୟମ ଧରଣର ବ୍ୟକ୍ତିଗତ ସମ୍ପତ୍ତିର ମାଲିକସମୂହର ସର୍ବନାଶ କରେ, ସେମାନଙ୍କୁ ସର୍ବହରା କରିଦିଏ ଓ ସେମାନଙ୍କର କ୍ରୟଶକ୍ତି କମେଇ ଦିଏ, ଫଳରେ ଉତ୍ପାଦିତ ହୋଇଥିବା ପଣ୍ୟଦ୍ରବ୍ୟର ବିକ୍ରି ଅସମ୍ଭବ ହୋଇ ପଡ଼େ ।

ଅନ୍ୟ ପକ୍ଷରେ, ଉତ୍ପାଦନର ସମ୍ପ୍ରସାରଣ ତଥା ବିରାଟ ବିରାଟ କଳକାରଖାନାଗୁଡ଼ିକରେ ଲକ୍ଷ ଲକ୍ଷ ଶ୍ରମିକଙ୍କୁ କେନ୍ଦ୍ରୀଭୂତ କରିବା ଦ୍ୱାରା, ଉତ୍ପାଦନର ପ୍ରକ୍ରିୟାକୁ ପୁଞ୍ଜିବାଦ ଏକ ସାମାଜିକ ଚରିତ୍ର ଦିଏ ଏବଂ ଏହା ଦ୍ୱାରା ତାର ନିଜର ଭିତ୍ତିକୁ ହିଁ ଦୁର୍ବଳ କରେ, କାରଣ ଉତ୍ପାଦନ ପ୍ରକ୍ରିୟାର ସାମାଜିକ ଚରିତ୍ର ଉତ୍ପାଦନର ସାଧନଗୁଡ଼ିକର ସାମାଜିକ ମାଲିକାନା

ଦାବି କରେ । ତଥାପି ଉତ୍ପାଦନ ସାଧନଗୁଡ଼ିକ ବ୍ୟକ୍ତିଗତ ପୁଞ୍ଜିବାଦୀ ସମ୍ପତ୍ତି ହୋଇ ରହିଥାଏ, ଯାହା ଉତ୍ପାଦନ ପ୍ରକ୍ରିୟାର ସାମାଜିକ ଚରିତ୍ରର ପରିପନ୍ଥୀ ଅଟେ ।

ଉତ୍ପାଦନ ପ୍ରକ୍ରିୟାର ଚରିତ୍ର ଓ ଉତ୍ପାଦନର ସମ୍ବନ୍ଧ ମଧ୍ୟରେ ଉପୁଜୁଥିବା ଦ୍ୱନ୍ଦାବଳୀର ସନ୍ତୋଷଜନକ ସମାଧାନ ଅସମ୍ଭବ ଓ ସମୟାନ୍ତରରେ ଘଟୁଥିବା ଅତିଉତ୍ପାଦନ ସଙ୍କଟରେ ସେଗୁଡ଼ିକର ପ୍ରଭାବ ପରିଲକ୍ଷିତ ହୋଇଥାଏ ।

ପୁଞ୍ଜିପତିମାନେ ହିଁ ଜନସମୁଦାୟଙ୍କର ସର୍ବନାଶ କରି ସାରିଥିବା ହେତୁ ସେମାନଙ୍କର ଉତ୍ପାଦିତ ପଣ୍ୟଦ୍ରବ୍ୟ ପାଇଁ ଗ୍ରାହକ ନ ପାଇ ସେଗୁଡ଼ିକୁ ପୋଡ଼ି ଦିଅନ୍ତି, ନଷ୍ଟ କରି ଦିଅନ୍ତି, ସାମୟିକ ଭାବେ ଉତ୍ପାଦନ ବନ୍ଦ କରନ୍ତି, ଉତ୍ପାଦିକା ଶକ୍ତିକୁ ଧ୍ୱଂସ କରନ୍ତି । ତାହା ପୁଣି ସେମାନେ ସେତେବେଳେ କରନ୍ତି ଯେତେବେଳେ ଲକ୍ଷ ଲକ୍ଷ ଲୋକ ବେକାରୀ ଓ କ୍ଷୁଧାର ଯନ୍ତ୍ରଣାରେ ସଢୁ ଥାଆନ୍ତି - ଯଥେଷ୍ଟ ପରିମାଣର ପଣ୍ୟଦ୍ରବ୍ୟର ଅଭାବ ଯୋଗୁଁ ନୁହେଁ, ପଣ୍ୟଦ୍ରବ୍ୟର ଅତିଉତ୍ପାଦନ ଯୋଗୁଁ ।

ତାହାର ଅର୍ଥ ହେଉଛି ଏହା ଯେ ଉତ୍ପାଦନର ପୁଞ୍ଜିବାଦୀ ସମ୍ବନ୍ଧ ସମାଜର ଉତ୍ପାଦିକା ଶକ୍ତିର ସ୍ଥିତିର ଅନୁରୂପ ହେବା ବନ୍ଦ ହୋଇ ସାରିଛି ଓ ତାହା ସହ ଏକ ସମାଧାନ-ଅସମ୍ଭବ-ଦ୍ୱନ୍ଦ୍ୱରେ ଉପନୀତ ହୋଇଛି ।

ତାହାର ଅର୍ଥ ହେଉଛି ଏହା ଯେ ପୁଞ୍ଜିବାଦ ବର୍ତ୍ତମାନ ଗର୍ଭବତୀ ହୋଇଛି, ତାର ଗର୍ଭରେ ରହିଛି ବିପ୍ଳବ - ଯାହାର ଲକ୍ଷ୍ୟ ହେଉଛି ଉତ୍ପାଦନ ସାଧନର ପ୍ରଚଳିତ ପୁଞ୍ଜିବାଦୀ ମାଲିକାନା ସ୍ଥାନରେ ସମାଜବାଦୀ ମାଲିକାନାର ସ୍ଥାପନା ।

ତାହାର ଅର୍ଥ ହେଉଛି ଏହା ଯେ ଶୋଷକ ଓ ଶୋଷିତଙ୍କ ମଧ୍ୟରେ ଅତ୍ୟନ୍ତ ତୀବ୍ର ଶ୍ରେଣୀ ସଂଗ୍ରାମ ହେଉଛି ପୁଞ୍ଜିବାଦୀ ବ୍ୟବସ୍ଥାର ମୁଖ୍ୟ ବୈଶିଷ୍ଟ୍ୟ ।

ବର୍ତ୍ତମାନ ସୁଦ୍ଧା କେବଳ ସୋଭିୟେତ୍ ୟୁନିଅନ୍‌ରେ ପ୍ରତିଷ୍ଠା ହୋଇଥିବା ସମାଜବାଦୀ ବ୍ୟବସ୍ଥାରେ ଉତ୍ପାଦନ ସମ୍ବନ୍ଧର ଭିତ୍ତି ହେଉଛି ଉତ୍ପାଦନର ସାଧନଗୁଡ଼ିକର ସାମାଜିକ ମାଲିକାନା । ଏଠି ଆଉ ଶୋଷକ ନାହାନ୍ତି କି ଶୋଷିତ ନାହାଁନ୍ତି । ଉତ୍ପାଦିତ ହେଉଥିବା ଜିନିଷଗୁଡ଼ିକୁ ଜଣେ ଶ୍ରମିକ କରିଥିବା ଶ୍ରମର ପରିମାଣ ଭିତ୍ତିରେ - ''ଯିଏ କାମ୍ କରିନି, ସିଏ ଖାଇବନି ମଧ୍ୟ'' ନୀତିରେ - ବଣ୍ଟା ଯାଇଥାଏ । ଏଠି ଶୋଷଣରୁ ମୁକ୍ତ ଶ୍ରମିକମାନଙ୍କର ସାଥୀଭାବାପନ୍ନ ସହଯୋଗ ଓ ପରସ୍ପର ମଧ୍ୟରେ ସମାଜବାଦୀ ସାହାଯ୍ୟ ଦ୍ୱାରା ଉତ୍ପାଦନ ପ୍ରକ୍ରିୟାରେ ଜନଗଣଙ୍କ ମଧ୍ୟରେ ଥିବା ପରସ୍ପର ସମ୍ପର୍କ ସୁସ୍ପଷ୍ଟ ହୋଇଥାଏ । ଏଠି ଉତ୍ପାଦନ ସମ୍ବନ୍ଧ ସମ୍ପୂର୍ଣ୍ଣରୂପେ ଉତ୍ପାଦିକା ଶକ୍ତିର ସ୍ଥିତିର ଅନୁରୂପ ହୋଇଥାଏ, କାରଣ ଉତ୍ପାଦନ ପ୍ରକ୍ରିୟାର ସାମାଜିକ ଚରିତ୍ର ଉତ୍ପାଦନ ସାଧନର ସାମାଜିକ ମାଲିକାନା ଦ୍ୱାରା ଦୃଢ଼ୀଭୂତ ହୋଇଥାଏ ।

ଏହି କାରଣରୁ, ସମୟାନ୍ତରରେ ଘଟୁଥିବା ଅତିଉତ୍ପାଦନ ସଙ୍କଟ ଓ ତାର ସହଯୋଗୀ ଉଦ୍ଭଟ କଥାମାନ ସୋଭିୟେତ୍ ୟୁନିଅନ୍‌ର ସମାଜବାଦୀ ଉତ୍ପାଦନରେ ଦେଖା ଦିଏନା ।

ଏହି କାରଣରୁ, ଏଠି ଉତ୍ପାଦିକା ଶକ୍ତିର ବିକାଶ ତ୍ୱରାନ୍ୱିତ ଗତିରେ ହେଉଛି, କାରଣ ତାହା ସହ ଅନୁରୂପ ହୋଇଥିବା ପ୍ରଚଳିତ ଉତ୍ପାଦନ ସମ୍ବନ୍ଧ ଏପରି ବିକାଶ ପାଇଁ ସମ୍ପୂର୍ଣ୍ଣ ସୁଯୋଗ ଯୋଗେଇ ଥାଏ ।

ଏହା ହିଁ ହେଉଛି ମଣିଷର ଇତିହାସର ଗତିପଥରେ ମଣିଷର ଉତ୍ପାଦନ ସମ୍ବନ୍ଧର ବିକାଶର ଚିତ୍ର ।

ଏହି ଭାବେ ସମାଜର ଉତ୍ପାଦିକା ଶକ୍ତିର ବିକାଶ ଉପରେ, ଏବଂ, ମୂଖ୍ୟତଃ, ଉତ୍ପାଦନ ଯନ୍ତ୍ରପାତିର ବିକାଶ ଉପରେ, ଉତ୍ପାଦନ ସମ୍ବନ୍ଧର ବିକାଶ ନିର୍ଭରଶୀଳ ହୋଇଥାଏ - ଯେଉଁ ନିର୍ଭରଶୀଳତା ଯୋଗୁଁ ଉତ୍ପାଦିକା ଶକ୍ତିର ପରିବର୍ତ୍ତନ ଓ ବିକାଶ ତକ୍ଷଣେ ହେଉ ବା ପରେ ଉତ୍ପାଦନ ସମ୍ବନ୍ଧରେ ଅନୁରୂପ ପରିବର୍ତ୍ତନ ଓ ବିକାଶ ଘଟେଇ ଥାଏ ।

ମାର୍କ୍ସ କହିଛନ୍ତି, ‘‘ଶ୍ରମ ଯନ୍ତ୍ରପାତିର (‘ଶ୍ରମ ଯନ୍ତ୍ରପାତି’ ଧାରଣାଟି ବ୍ୟବହାର କଲା ବେଳେ ମାର୍କ୍ସଙ୍କ ମନରେ ମୁଖ୍ୟତଃ ଉତ୍ପାଦନର ଯନ୍ତ୍ରପାତି ହିଁ ରହିଛି - ସମ୍ପାଦକ) ତିଆରି ଓ ବ୍ୟବହାର ଯଦିଚ୍ କେତେକ ଜାତିର ପ୍ରାଣୀଙ୍କ ପାଖରେ ଅଙ୍କୁର ଆକାରରେ ଦେଖା ଯାଇଥାଏ, ତଥାପି ଏହା ମାନବ ଶ୍ରମ-ପ୍ରକ୍ରିୟାର ବୈଶିଷ୍ଟ୍ୟଗତ ଗୁଣ ଅଟେ । ତେଣୁ ମଣିଷର ସଂଜ୍ଞା ଦେବାକୁ ଯାଇ ଫ୍ରାଙ୍କଲିନ୍ କହିଥିଲେ ଯେ ମଣିଷ ହେଉଛି ଏକ ହତିଆର ତିଆର କରୁଥିବା ପ୍ରାଣୀ । ପ୍ରାଣୀମାନଙ୍କ ମଧ୍ୟରେ କେଉଁ ଜାତି ଲୁପ୍ତ ହୋଇ ସାରିଛି ତାହାର ନିର୍ଦ୍ଧାରଣ ପାଇଁ ପ୍ରସ୍ତରୀଭୂତ କଙ୍କାଳ ଯେପରି ମୁଖ୍ୟ ଭୂମିକା ପାଳନ କରିଥାଏ, ସମାଜର ଲୁପ୍ତ ଅର୍ଥନୈତିକ ଆକାରଗୁଡ଼ିକର ଅନୁସନ୍ଧାନ ପାଇଁ ଅତୀତର ଶ୍ରମ ଯନ୍ତ୍ରପାତିର ମିଳୁଥିବା ଅବଶେଷ ସେପରି ମୁଖ୍ୟ ଭୂମିକା ପାଳନ କରିଥାଏ । ବିଭିନ୍ନ ଅର୍ଥନୈତିକ ଯୁଗକୁ ଚିହ୍ନଟ କରିବାରେ ଅତୀତରେ ତିଆରି ହୋଇଥିବା ଜିନିଷଗୁଡ଼ିକ ଆମକୁ ସାହାଯ୍ୟ କରି ନଥାଏ, କେବଳ ସାହାଯ୍ୟ କରିଥାଏ ସେଗୁଡ଼ିକ କିପରି ତିଆରି ହେଲା ଓ କେଉଁ ହାତ ହତିଆର ସାହାଯ୍ୟରେ ତିଆରି ହେଲା । ମଣିଷର ଶ୍ରମ ବିକାଶର କେଉଁ ମାତ୍ରାରେ ପହଞ୍ଚିଛି ଶ୍ରମ ଯନ୍ତ୍ରପାତି କେବଳ ତାହାର ପରିମାପକ ନୁହେଁ, କିନ୍ତୁ କେଉଁ ସାମାଜିକ ପରିସ୍ଥିତିରେ ଶ୍ରମ କରାଗଲା ତାହାର ମଧ୍ୟ ସୂଚକ ଅଟେ । (Karl Marx, *Capital,* London 1908, Vol. I, p. 159.)

ଏବଂ ଆହୁରି:

- ‘‘ସାମାଜିକ ସମ୍ପର୍କ ଉତ୍ପାଦିକା ଶକ୍ତି ସହ ଓତପ୍ରୋତ ଭାବେ ଜଡ଼ିତ । ନୂଆ ଉତ୍ପାଦିକା ଶକ୍ତିକୁ ଅଭିଆର କରି ମଣିଷମାନେ ସେମାନଙ୍କର ଉତ୍ପାଦନ ଧାରାକୁ ପରିବର୍ତ୍ତନ କରିଥାନ୍ତି, ଏବଂ ସେମାନଙ୍କର ଉତ୍ପାଦନ ଧାରାକୁ ପରିବର୍ତ୍ତନ କରି, ସେମାନଙ୍କର ଜୀବିକାର୍ଜ୍ଜନର ବାଟ ବଦଳେଇ, ସେମାନେ ସେମାନଙ୍କର ସମସ୍ତ ସାମାଜିକ ସମ୍ପର୍କକୁ ବଦଳେଇ ଥାନ୍ତି । ହାତ-କଳ ଦେଇଥାଏ ସାମନ୍ତବାଦୀ ପ୍ରଭୁ ଥିବା ଏକ ସମାଜ, ଆଉ ବାଷ୍ପୀୟ-କଳ, ଶିଳ୍ପ ପୁଞ୍ଜିପତି ଥିବା ଏକ ସମାଜ ।’’ (Karl Marx, *The Poverty of Philosophy,* Eng. ed., Moscow 1935, p. 92.)

— "ଉତ୍ପାଦିକା ଶକ୍ତିର ଅଭିବୃଦ୍ଧିରେ, ସାମାଜିକ ସମ୍ପର୍କର ବିନାଶରେ, ଧାରଣାଗୁଡ଼ିକର ଗଠନ ପ୍ରକ୍ରିୟାରେ, ସର୍ବତ୍ର ଅବିରତ ଗତି ପରିଲକ୍ଷିତ ହୁଏ । ଅଥଚ କେବଳ ଗୋଟିଏ ମାତ୍ର ବସ୍ତୁ ରହିଛି ଯାହାର ପରିବର୍ତ୍ତନ ହୁଏନା ଓ ସେଇଟି ହେଉଛି ଗତିର ବସ୍ତୁ ନିରପେକ୍ଷ ଧାରଣା ।" (ପୂର୍ବୋକ୍ତ ଗ୍ରନ୍ଥ, ପୃ. ୯୩।)

"କମ୍ୟୁନିଷ୍ଟ ଇସ୍ତାହାର" ରେ ଯେଉଁ ଭାବରେ ଐତିହାସିକ ବସ୍ତୁବାଦ ପ୍ରତିପାଦିତ ହୋଇଛି ସେହି ବିଷୟରେ ଏଙ୍ଗେଲ୍‌ସ୍ କହିଛନ୍ତି,

"ପ୍ରତ୍ୟେକଟି ଐତିହାସିକ ଯୁଗର ଅର୍ଥନୈତିକ ଉତ୍ପାଦନ ତଥା ସମାଜର ଗଠନ ଅବଶ୍ୟମ୍ଭାବୀ ଭାବେ ସେହି ଯୁଗରୁ ହିଁ ଜାତ ହୋଇ ତାହାର ରାଜନୈତିକ ତଥା ବୌଦ୍ଧିକ ଇତିହାସର ଭିତ୍ତିଭୂମି ହୋଇଥାଏ, ଯାହାର ପରିଣତି ସ୍ୱରୂପ (ଜମିର ଆଦ୍ୟ ଗୋଷ୍ଠୀଗତ ମାଲିକାନାର ବିଲୋପ ପର ଠାରୁ) ସମସ୍ତ ଇତିହାସ ହେଉଛି ଶ୍ରେଣୀ ସଂଘର୍ଷର ଇତିହାସ । ସାମାଜିକ ବିକାଶର ବିଭିନ୍ନ ସ୍ତରରେ ଶୋଷିତ ଓ ଶୋଷଣକାରୀ ମଧ୍ୟରେ ହୋଇଥିବା ସଂଘର୍ଷର, ଆଧିପତ୍ୟର ଶିକାର ହୋଇଥିବା ଶ୍ରେଣୀ ତଥା ଆଧିପତ୍ୟ ଜାହିର କରୁଥିବା ଶ୍ରେଣୀ ମଧ୍ୟରେ ହୋଇଥିବା ସଂଘର୍ଷର ଇତିହାସ । ତଥାପି ଏହି ସଂଘର୍ଷ ଆଜି ଏପରି ଏକ ସ୍ତରରେ ଆସି ପହଞ୍ଚିଛି ଯେଉଁଠି ଶୋଷିତ ତଥା ଅତ୍ୟାଚାରୀତ ଶ୍ରେଣୀ (ସର୍ବହରା ଶ୍ରେଣୀ)ଟି ଖୋଦ୍ ନିଜକୁ ଶୋଷଣକାରୀ ତଥା ଅତ୍ୟାଚାରୀ ଶ୍ରେଣୀ (ବୁର୍ଜୁଆ ଶ୍ରେଣୀ) କବଳରୁ ସେତେ ଦିନ ପର୍ଯ୍ୟନ୍ତ ମୁକ୍ତ କରି ପାରିବନି ଯେତେ ଦିନ ପର୍ଯ୍ୟନ୍ତ ତାହା ସମଗ୍ର ସମାଜକୁ ଶୋଷଣ, ଅତ୍ୟାଚାର ଏବଂ ଶ୍ରେଣୀ ସଂଘର୍ଷ କବଳରୁ ଚୀର ମୁକ୍ତି ନ ଦେଇଛି ।" (Preface to the German edition of the *Communist Manifesto* — Karl Marx, *Selected Works,* Eng. ed., Moscow 1946, Vol. I, pp. 100-01.)

ଘ) ***ଉତ୍ପାଦନର ତୃତୀୟ ବୈଶିଷ୍ଟ୍ୟ*** ହେଲା ଏହା ଯେ ନୂତନ ଉତ୍ପାଦିକା ଶକ୍ତି ଓ ତାର ଅନୁରୂପ ଉତ୍ପାଦନ ସମ୍ବନ୍ଧ ପୁରୁଣା ବ୍ୟବସ୍ଥା ଠୁଁ ବିଚ୍ଛିନ୍ନ ଭାବେ, ପୁରୁଣା ବ୍ୟବସ୍ଥାର ସ୍ଥିତି ଲୋପ ପାଇବା ପରେ ଦେଖା ଦିଏନା, ଓଲଟି ପୁରୁଣା ବ୍ୟବସ୍ଥା ମଧ୍ୟରେ ହିଁ ଦେଖା ଦେଇଥାଏ । ମଣିଷର ସଯତ୍ନ ଚିନ୍ତା ଓ ସଚେତନ କାର୍ଯ୍ୟକଳାପର ପରିଣତି ସ୍ୱରୂପ ଏହା ଘଟି ନଥାଏ, ବରଂ ଏହା ଘଟିଥାଏ ସ୍ୱତଃସ୍ଫୂର୍ତ୍ତ ଭାବେ, ଅଚେତନ ଭାବେ, ମଣିଷର ଇଚ୍ଛା ଠୁଁ ସ୍ୱାଧୀନ ଭାବେ। ସ୍ୱତଃସ୍ଫୂର୍ତ୍ତ ଭାବେ ଓ ମଣିଷର ଇଚ୍ଛା ଠୁଁ ସ୍ୱାଧୀନ ଭାବେ ଏହା ଘଟିଥାଏ ଦୁଇଟି କାରଣରୁ ।

ପ୍ରଥମତଃ ଏହି କାରଣରୁ ଯେ ନିଜ ପସନ୍ଦ ମୁତାବକ ଯେକୌଣସି ଗୋଟିଏ ଉତ୍ପାଦନ ଧାରାକୁ ବାଛି ନେବା ସ୍ୱାଧୀନତା ମଣିଷର ନଥାଏ, ଏହି କାରଣରୁ ଯେ ପ୍ରତ୍ୟେକଟା ନୁଆ ପିଢ଼ି ଜୀବନ କ୍ଷେତ୍ରରେ ପାଦ ଦେଉ ଦେଉ ପୂର୍ବ ପିଢ଼ିମାନଙ୍କର କାର୍ଯ୍ୟଧାରାର ଫଳାଫଳ ସ୍ୱରୂପ ଆଗରୁ ରହିଥିବା ଉତ୍ପାଦିକା ଶକ୍ତି ଓ ଉତ୍ପାଦନ ସମ୍ବନ୍ଧକୁ ପାଇଥାଏ, ଯେଉଁଥି ପାଇଁ ମୂଲ୍ୟଯୁକ୍ତ ବସ୍ତୁସମୂହର ଉତ୍ପାଦନ କରିବା ପାଇଁ ସକ୍ଷମ ହେବା ଉଦ୍ଦେଶ୍ୟରେ ଉତ୍ପାଦନ କ୍ଷେତ୍ରରେ ଆଗରୁ ପ୍ରସ୍ତୁତ ହୋଇ ରହିଥିବା ପ୍ରତ୍ୟେକ କଥାକୁ ଗ୍ରହଣ କରିବା ପାଇଁ ଓ ତା ସହ ନିଜକୁ ଖାପ ଖୁଆଇବା ପାଇଁ ନୂଆ ପିଢ଼ି ବାଧ୍ୟ ହୋଇଥାଏ ।

ଦ୍ୱିତୀୟତଃ, ଏହି କାରଣରୁ ଯେ କୌଣସି ନା କୌଣସି ଉତ୍ପାଦନ ଯନ୍ତ୍ରପାତିର, ଉତ୍ପାଦିକା ଶକ୍ତିର କୌଣସି ନା କୌଣସି ଉପାଦାନର ଉନ୍ନତି କଲାବେଳେ, ଏହି ଉନ୍ନତିର *ସାମାଜିକ* ଫଳାଫଳ କଅଣ ହେବ ତାହା ମଣିଷମାନେ ଅନୁଭବ କରନ୍ତିନି, ବୁଝନ୍ତିନି କି ଚିନ୍ତା ମଧ୍ୟ କରନ୍ତିନି । ସେମାନେ କେବଳ ସେମାନଙ୍କ ନିଜର ନଗଦ ଲାଭ କଥା, ଶ୍ରମ ଲାଘବ କଥା, କେତେକ ନିର୍ଦ୍ଦିଷ୍ଟ ସୁବିଧାସୁଯୋଗ କଥା ଭାବି ଥାଆନ୍ତି ।

ଯେତେବେଳେ ଆସ୍ତେ ଆସ୍ତେ, ଦରାଣ୍ଡି ଦରାଣ୍ଡି ଆଦିମ ଗୋଷ୍ଠୀ ସମାଜର କେତେକ ବ୍ୟକ୍ତି ପଥର ହତିଆରର ବ୍ୟବହାରରୁ ଲୌହ ହତିଆରର ବ୍ୟବହାରକୁ ଗତି କଲେ, ସେତେବେଳେ ଏହି ନୂତନ ପରିବର୍ତ୍ତନ କେଉଁ ଧରଣର *ସାମାଜିକ* ଫଳାଫଳ ଦେବ ସେମାନେ ଅବଶ୍ୟ ଜାଣି ନଥିଲେ ଅବା ଚିନ୍ତା କରିବା ପାଇଁ ବସିଯାଇ ନଥିଲେ। ସେମାନେ ଏହା ବୁଝିପାରି ନଥିଲେ ଅବା ହୃଦୟଙ୍ଗମ କରି ନଥିଲେ ଯେ ଲୌହ ହତିଆରର ଅର୍ଥ ହେଉଛି ଉତ୍ପାଦନରେ ବିପ୍ଳବ, କାଳକ୍ରମେ ଏହାର ପରିଣତି ହେବ ଦାସ ବ୍ୟବସ୍ଥା। ସେମାନେ କେବଳ ସେମାନଙ୍କର ଶ୍ରମ ଲାଘବ କରିବା କଥା ଚାହିଁଥିଲେ, କେତେକ ଜରୁରି ଓ ନିର୍ଦ୍ଦିଷ୍ଟ ସୁବିଧାସୁଯୋଗ ପାଇବା ପାଇଁ ଚାହିଁଥିଲେ। ସେମାନଙ୍କର ସଚେତନ କାର୍ଯ୍ୟକଳାପ ଏହି ନିତିଦିନିଆ ବ୍ୟକ୍ତିଗତ ସ୍ୱାର୍ଥର ପରିସର ମଧ୍ୟରେ ହିଁ ସୀମିତ ଥିଲା ।

ସାମନ୍ତବାଦୀ ବ୍ୟବସ୍ଥା ଅମଳରେ ୟୁରୋପର ନୂଆ ବୁର୍ଜୁଆ ଶ୍ରେଣୀ ଯେତେବେଳେ କ୍ଷୁଦ୍ର ଗିଲ୍ଡ ଶାଳଗୁଡ଼ିକର ପାଖେ ପାଖେ ବଡ଼ ବଡ଼ କାରଖାନାମାନ ବସାଇଲା, ଓ ଏହିଭାବେ ସମାଜର ଉତ୍ପାଦିକା ଶକ୍ତିକୁ ଆଗେଇ ନେଲା, ସେତେବେଳେ ଏହି ନୂତନତ୍ୱର ସ୍ଥାପନା କେଉଁ ଧରଣର *ସାମାଜିକ* ଫଳାଫଳ ଦେବ ବୁର୍ଜୁଆ ଶ୍ରେଣୀ ଅବଶ୍ୟ ଜାଣି ନଥିଲା ଅବା ଚିନ୍ତା କରିବା ପାଇଁ ବସିଯାଇ ନଥିଲା। ଏହା ବୁଝିପାରି ନଥିଲା ଅବା ହୃଦୟଙ୍ଗମ କରି ନଥିଲା ଯେ ଏହି "ଛୋଟିଆ" ନୂତନତ୍ୱର ସ୍ଥାପନା ସାମାଜିକ ଶକ୍ତିଗୁଡ଼ିକର ପୁନର୍ବିନ୍ୟାସ କରି ନୂଆ ଗୋଷ୍ଠୀମାନ ଗଢ଼ି ତୋଳିବ ଯାହାର ଅନ୍ତ ହେବ ଏକ ବିପ୍ଳବରେ। ରାଜା ଓ ସମ୍ଭ୍ରାନ୍ତଶ୍ରେଣୀ ଉଭୟଙ୍କ ବିରୁଦ୍ଧରେ ବିପ୍ଳବ - ଯେଉଁ ରାଜାମାନଙ୍କ ଅନୁଗ୍ରହକୁ ବୁର୍ଜୁଆ ଶ୍ରେଣୀ ଅତି ମୂଲ୍ୟବାନ ମଣୁଥିଲା, ସେହି ରାଜାମାନଙ୍କ କ୍ଷମତା ବିରୁଦ୍ଧରେ ବିପ୍ଳବ, ଯେଉଁ ସମ୍ଭ୍ରାନ୍ତଶ୍ରେଣୀର ସ୍ତରକୁ ଉଠିବା ପାଇଁ ବୁର୍ଜୁଆ ଶ୍ରେଣୀର ଆଗୁଆ ପ୍ରତିନିଧିମାନେ ଅବିରଳ ଭାବେ ଇଚ୍ଛା କରୁଥିଲେ, ସେହି ସମ୍ଭ୍ରାନ୍ତଶ୍ରେଣୀ ବିରୁଦ୍ଧରେ ବିପ୍ଳବ। ବୁର୍ଜୁଆ ଶ୍ରେଣୀ କେବଳ ପଣ୍ୟଦ୍ରବ୍ୟର ଉତ୍ପାଦନ ମୂଲ୍ୟ କମେଇବାକୁ, ଏସିଆ ଓ ସଦ୍ୟ ଆବିଷ୍କୃତ ଆମେରିକାର ବଜାରରେ ଅଧିକରୁ ଅଧିକ ପରିମାଣର ପଣ୍ୟଦ୍ରବ୍ୟ ଗଦା କରିବାକୁ ତଥା ବୃହତ୍ତର ଆକାରର ଲାଭ କରିବାକୁ ଚାହୁଁଥିଲା । ତାହାର ସଚେତନ କାର୍ଯ୍ୟକଳାପ ଏହି ମାମୁଲି ବାସ୍ତବବାଦୀ ଲକ୍ଷ୍ୟର ସଂକୀର୍ଣ୍ଣ ପରିସୀମା ମଧ୍ୟରେ ସୀମିତ ଥିଲା ।

ଜାରଙ୍କ ରାଜତ୍ୱକୁ ଅକ୍ଷୁର୍ଣ୍ଣ ରଖି, ଚାଷୀମାନଙ୍କୁ ଜମିଦାରମାନଙ୍କ କୋମଳ ଦୟା ଉପରେ ଛାଡ଼ି ଦେଇ, ଯେତେବେଳେ ଋଷିଆର ପୁଞ୍ଜିପତିମାନେ ବିଦେଶୀ ପୁଞ୍ଜିପତିଙ୍କ ସହିତ

ଯୋଡ଼ି ହୋଇ ଋଷିଆରେ ଆଧୁନିକ ବୃହତାକାର ମେସିନ୍ ଶିଳ୍ପ ପ୍ରତିଷ୍ଠା କଲେ, ସେତେବେଳେ ସେମାନେ ଅବଶ୍ୟ ଏହା ଜାଣିପାରି ନଥିଲେ ଅବା ଚିନ୍ତା କରିବା ପାଇଁ ବସିଯାଇ ନଥିଲେ ଯେ ଉତ୍ପାଦିକା ଶକ୍ତିର ଏହି ବ୍ୟାପକ ଅଭିବୃଦ୍ଧି କେଉଁ ଧରଣର *ସାମାଜିକ* ଫଳାଫଳ ଦେବ, ସେମାନେ ଏହା ବୁଝିପାରି ନଥିଲେ ଅବା ହୃଦୟଙ୍ଗମ କରି ନଥିଲେ ଯେ ସମାଜର ଉତ୍ପାଦିକା-ଶକ୍ତି-ଜଗତରେ ହୋଇଥିବା ଏହି ବିରାଟ ଲମ୍ଫ ସାମାଜିକ ଶକ୍ତିଗୁଡ଼ିକର ପୁନର୍ବିନ୍ୟାସ କରି ନୂଆ ଗୋଷ୍ଠୀମାନ ଗଢ଼ି ତୋଳିବା ପାଇଁ ବାଟ ଦେଖାଇବ, ଯାହା ସର୍ବହରା ଶ୍ରେଣୀକୁ ଚାଷୀମାନଙ୍କ ସହ ମିଳିତ ହେବା ପାଇଁ ସୁଯୋଗ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ଏକ ବିଜୟମଣ୍ଡିତ ସମାଜବାଦୀ ବିପ୍ଳବ ସଂଗଠିତ କରିବା ପାଇଁ ସକ୍ଷମ କରିବ । ସେମାନେ କେବଳ ଶିଳ୍ପ ଉତ୍ପାଦନକୁ ତାର ପାରୁ ପର୍ଯ୍ୟନ୍ତ ଅଭିବୃଦ୍ଧି ଘଟେଇବା ପାଇଁ, ବିରାଟ ଦେଶୀୟ ବଜାରକୁ ନିୟନ୍ତ୍ରଣ କରିବା ପାଇଁ, ଏକଚାଟିଆ ପୁଞ୍ଜିପତି ହେବା ପାଇଁ, ଓ ଜାତୀୟ ଅର୍ଥବ୍ୟବସ୍ଥାରୁ ଯେତିକି ଲାଭ ଚିପୁଡ଼ା ଯାଇପାରେ ଚିପୁଡ଼ି ବାହାର କରିବା ପାଇଁ ଚାହିଁଥିଲେ । ସେମାନଙ୍କର ସଚେତନ କାର୍ଯ୍ୟକଳାପ ସେମାନଙ୍କର ମାମୁଲି, କଡ଼ାକଡ଼ିଭାବେ ବାସ୍ତବବାଦୀ ସ୍ୱାର୍ଥର ସୀମା ବାହାରକୁ ଯାଇ ନଥିଲା ।

ସେଥିଯୋଗୁଁ ମାର୍କ୍ସ କହିଛନ୍ତି,

> ''ସେମାନଙ୍କ ଜୀବନର ସାମାଜିକ ଉତ୍ପାଦନରେ (ଅର୍ଥାତ୍, ମଣିଷର ଜୀବନ ପାଇଁ ଆବଶ୍ୟକ ଥିବା ମୂଲ୍ୟଯୁକ୍ତ ବସ୍ତୁସମୂହର ଉତ୍ପାଦନରେ - ସମ୍ପାଦକ) ମଣିଷମାନେ, ସେମାନଙ୍କ ପାଇଁ ଅପରିହାର୍ଯ୍ୟ ଅଥଚ ସେମାନଙ୍କ ଇଚ୍ଛା ଠାରୁ *ସ୍ୱାଧୀନ* (ଗୁରୁତ୍ୱ - ସମ୍ପାଦକ) ଭାବରେ ରହିଥିବା, ନିର୍ଦ୍ଦିଷ୍ଟ ସମ୍ପର୍କଗୁଡ଼ିକ ସହ ଜଡ଼ିତ ହୋଇ ଯାଆନ୍ତି - ଯେଉଁ ଉତ୍ପାଦନ ସମ୍ପର୍କଗୁଡ଼ିକ ବାସ୍ତବ ଉତ୍ପାଦିକା ଶକ୍ତିର ବିକାଶର ନିର୍ଦ୍ଦିଷ୍ଟ ସ୍ତରର ଅନୁରୂପ ହୋଇଥାଏ । (Karl Marx, *Selected Works,* Eng. ed., Moscow 1946, Vol. I, p. 300.)

ତଥାପି, ତାହାର ଅର୍ଥ ଏହା ନୁହେଁ ଯେ ଉତ୍ପାଦନ ସମ୍ବନ୍ଧଗୁଡ଼ିକରେ ପରିବର୍ତ୍ତନ, ଏବଂ ପୁରୁଣା ଉତ୍ପାଦନ ସମ୍ବନ୍ଧଗୁଡ଼ିକରୁ ନୂଆ ଉତ୍ପାଦନ ସମ୍ବନ୍ଧଗୁଡ଼ିକକୁ ଅବସ୍ଥାନ୍ତରର ଗତି, କୌଣସି ସଂଘର୍ଷ ନଥାଇ, ସାଙ୍ଘାତିକ ପରିବର୍ତ୍ତନ ନଥାଇ, ମସୃଣ, ସରଳ ହୋଇଥାଏ। ଓଲଟି, ଏହି ଭଳିଆ ଅବସ୍ଥାନ୍ତର ସାଧାରଣତଃ ପୁରୁଣା ଉତ୍ପାଦନ ସମ୍ବନ୍ଧଗୁଡ଼ିକର ବୈପ୍ଳବିକ ବିପର୍ଯ୍ୟସ୍ତ ଘଟେଇ ତା ସ୍ଥାନରେ ନୂଆ ଉତ୍ପାଦନ ସମ୍ବନ୍ଧଗୁଡ଼ିକକୁ ସ୍ଥାପନା କରିଥାଏ । କେତେକ ନିର୍ଦ୍ଦିଷ୍ଟ ସମୟ ପର୍ଯ୍ୟନ୍ତ ଉତ୍ପାଦିକା ଶକ୍ତିର ବିକାଶ ଓ ଉତ୍ପାଦନ-ସମ୍ବନ୍ଧ-ଜଗତରେ ପରିବର୍ତ୍ତନ, ମଣିଷର ଇଚ୍ଛା ଠୁଁ ସ୍ୱାଧୀନ ରୂପେ, ସ୍ୱତଃସ୍ଫୂର୍ତ୍ତ ଭାବେ ଘଟିଥାଏ । କିନ୍ତୁ ତାହା ଘଟିଥାଏ କେବଳ ଏକ ନିର୍ଦ୍ଦିଷ୍ଟ ମୁହୂର୍ତ୍ତ ପର୍ଯ୍ୟନ୍ତ - ନୂଆ ଓ ବିକାଶଲାଭ କରୁଥିବା ଉତ୍ପାଦିକା ଶକ୍ତି ପରିପକ୍ୱତାର ଯଥାର୍ଥ ସ୍ଥିତିରେ ପହଞ୍ଚିବା ପର୍ଯ୍ୟନ୍ତ । ନୂଆ ଉତ୍ପାଦିକା ଶକ୍ତି ପରିପକ୍ୱ ହେବା ପରେ, ପ୍ରଚଳିତ ଉତ୍ପାଦନ ସମ୍ବନ୍ଧ ଓ ତାହାର

ସମର୍ଥକମାନେ - ଶାସକ ଶ୍ରେଣୀମାନେ - "ଦୁର୍ଲଙ୍ଘ୍ୟ" ପ୍ରତିବନ୍ଧକ ହୋଇ ଯାଆନ୍ତି, ଯାହାର ନିରାକରଣ କେବଳ ନୂଆ ଶ୍ରେଣୀର ସଚେତନ କାର୍ଯ୍ୟକଳାପ ଦ୍ୱାରା, ଯୋର ଜବରଦସ୍ତ କାର୍ଯ୍ୟ ଦ୍ୱାରା, ବିପ୍ଳବ ଦ୍ୱାରା ସମ୍ଭବ ହୋଇଥାଏ । ଏହି ସମୟରେ ହିଁ ଲକ୍ଷ୍ୟ ପୂରଣ ଉଦ୍ଦେଶ୍ୟରେ ପୁରୁଣା ଉତ୍ପାଦନ ସମ୍ବନ୍ଧଗୁଡ଼ିକୁ ଯୋର ଜବରଦସ୍ତ ଉଚ୍ଛେଦ କରିବାରେ ନୁଆ ସାମାଜିକ ଧାରଣା, ନୂଆ ରାଜନୈତିକ ଅନୁଷ୍ଠାନ, ନୂଆ ରାଜନୈତିକ କ୍ଷମତାର ମହାନ ଭୂମିକା ଜୀବନ୍ତ ହୋଇ ଅତି ସ୍ପଷ୍ଟ ହୋଇ ଯାଇଥାଏ । ନୂଆ ଉତ୍ପାଦିକା ଶକ୍ତି ଓ ପୁରୁଣା ଉତ୍ପାଦନ ସମ୍ବନ୍ଧ ମଧ୍ୟରେ ଉପୁଜୁଥିବା ଦ୍ୱନ୍ଦସମୂହରୁ, ସମାଜର ନୂଆ ଅର୍ଥନୈତିକ ଦାବିସମୂହରୁ ଜାତ ହୋଇଥାଏ ନୂଆ ସାମାଜିକ ଧାରଣା ।

ନୂଆ ଧାରଣା ଜନଗଣଙ୍କୁ ସଂଗଠିତ କରେ, ଗତିଶୀଳ କରେ । ଜନଗଣ ଏକଜୁଟ୍ ହୋଇ ଏକ ନୂଆ ରାଜନୈତିକ ବାହିନୀ ଗଠନ କରନ୍ତି, ଏକ ନୂଆ ରାଜନୈତିକ କ୍ଷମତା ସୃଷ୍ଟି କରନ୍ତି, ଓ ତାରି ସାହାଯ୍ୟରେ ଉତ୍ପାଦନ ସମ୍ବନ୍ଧର ପୁରୁଣା ବ୍ୟବସ୍ଥାକୁ ଯୋର ଜବରଦସ୍ତ ଉଚ୍ଛେଦ କରି ନୂଆ ବ୍ୟବସ୍ଥାକୁ ଦୃଢ଼ ଭାବେ ସ୍ଥାପନା କରନ୍ତି । ବିକାଶର ସ୍ୱତଃସ୍ଫୂର୍ତ୍ତ ଧାରାର ସ୍ଥାନ ନେଇଥାଏ ମଣିଷର ସଚେତନ କାର୍ଯ୍ୟଧାରା, ଶାନ୍ତିପୂର୍ଣ୍ଣ ବିକାଶର ସ୍ଥାନ ନେଇଥାଏ ହିଂସାତ୍ମକ ପରିବର୍ତ୍ତନ, ବିବର୍ତ୍ତନର ସ୍ଥାନ ନେଇଥାଏ ବିପ୍ଳବ ।

ମାର୍କ୍ସ କହିଛନ୍ତି, "ବୁର୍ଜୁଆ ଶ୍ରେଣୀ ସହ ଲଢ଼େଇ କାଳରେ ସର୍ବହରା ଶ୍ରେଣୀ, ପରିସ୍ଥିତିର ଚାପରେ, ବାଧ୍ୟ ହୁଏ ନିଜକୁ ଏକ ଶ୍ରେଣୀ ହିସାବରେ ସଂଗଠିତ କରିବା ପାଇଁ ... ଏକ ବିପ୍ଳବ ମାଧ୍ୟମରେ ସେ ନିଜକୁ ଶାସକ ଶ୍ରେଣୀରେ ପରିଣତ କରେ ଏବଂ, ସେହି ହିସାବରେ, ଉତ୍ପାଦନର ସମସ୍ତ ପୁରୁଣା ଅବସ୍ଥାକୁ ବଳପୂର୍ବକ ମୂଳପୋଛ କରିଦିଏ ।"(*The Communist Manifesto* — Karl Marx, *Selected Works*, Eng. ed., Moscow 1946, Vol. I, p. 131.)

ଏବଂ ଆହୁରି,

- "ସର୍ବହରା ଶ୍ରେଣୀ ତାର ରାଜନୈତିକ ଆଧିପତ୍ୟ ବ୍ୟବହାର କରି ବୁର୍ଜୁଆ ଶ୍ରେଣୀ ଠାରୁ କ୍ରମଶଃ ସମସ୍ତ ପୁଞ୍ଜି ଛଡ଼ାଇ ଆଣିବ, ଉତ୍ପାଦନର ସମସ୍ତ ଉପକରଣ ରାଷ୍ଟ୍ର ହାତରେ, ଅର୍ଥାତ୍ ଶାସକ ଶ୍ରେଣୀ ଭାବେ ସଂଗଠିତ ହୋଇଥିବା ଶ୍ରମିକ ଶ୍ରେଣୀ ହାତରେ କେନ୍ଦ୍ରୀଭୂତ କରିବ, ଏବଂ ଉତ୍ପାଦିକା ଶକ୍ତିଗୁଡ଼ିକର ସମଷ୍ଟିର ଯଥାସମ୍ଭବ ଦ୍ରୁତ ଗତିରେ ଅଭିବୃଦ୍ଧି ଘଟାଇବ ।"(ପୂର୍ବୋକ୍ତ ଗ୍ରନ୍ଥ, ପୃ. ୧୨୯ )

- "ପ୍ରତ୍ୟେକ ପୁରୁଣା ସମାଜ ନୂଆ ସମାଜକୁ ଜନ୍ମ ଦେବା ବେଳେ ବଳ ଧାଇ ଭଳି କାମ କରିଥାଏ । (Karl Marx, *Capital*, Vol. I, p. 776.)

ମାର୍କ୍ସ ୧୮୫୯ ମସିହାରେ ତାଙ୍କର ବିଖ୍ୟାତ ବହି *Critique of Political Economy* (*ରାଜନୈତିକ ଅର୍ଥଶାସ୍ତ୍ରର ସମାଲୋଚନା*) ପାଇଁ ଲିଖିତ ଏକ ଐତିହାସିକ ମୁଖବନ୍ଧରେ

ଐତିହାସିକ ବସ୍ତୁବାଦର ଯେଉଁ ସାରାଂଶ ନିରୂପଣ କରିଥିଲେ - ଯାହା ଏକ ଅସାଧାରଣ ଧୀଶକ୍ତି କରିଥିବା ନିରୂପଣ - ତାହା ହେଲା ନିମ୍ନ ପ୍ରକାରେ:

"ସେମାନଙ୍କ ଜୀବନର ସାମାଜିକ ଉତ୍ପାଦନ କ୍ଷେତ୍ରରେ, ମଣିଷମାନେ ସେମାନଙ୍କ ପାଇଁ ଅପରିହାର୍ଯ୍ୟ ଅଥଚ ସେମାନଙ୍କ ଇଚ୍ଛା ଠାରୁ ସ୍ୱାଧୀନ ହୋଇଥିବା ନିର୍ଦ୍ଦିଷ୍ଟ ସମ୍ପର୍କ ସହ, ଉତ୍ପାଦନ ସମ୍ବନ୍ଧ ସହ, ଜଡ଼ିତ ହୋଇ ଯାଆନ୍ତି, ଯାହା ସେମାନଙ୍କର ବସ୍ତୁଗତ ଉତ୍ପାଦିକା ଶକ୍ତିର ବିକାଶର ଏକ ନିର୍ଦ୍ଦିଷ୍ଟ ସ୍ତରର ଅନୁରୂପ ହୋଇଥାଏ। ଏହି ଉତ୍ପାଦନ ସମ୍ବନ୍ଧର ସମଷ୍ଟିକୁ ନେଇ ହିଁ ଗଠିତ ହୋଇଥାଏ ସମାଜର ଅର୍ଥନୈତିକ ଢାଞ୍ଚା। ଏହା ହିଁ ହେଉଛି ସେଇ ବାସ୍ତବ ଭିତ୍ତି ଯାରି ଉପରେ ଗଢ଼ି ଉଠେ ଆଇନଗତ ଓ ରାଜନୈତିକ ଉପରିଢାଞ୍ଚା (superstructure) ଏବଂ ଯାହାର ଅନୁରୂପ ହୋଇଥାଏ ସାମାଜିକ ଚେତନାର ନିର୍ଦ୍ଦିଷ୍ଟ ଆକାରମାନ । ବାସ୍ତବ ଜୀବନର ଉତ୍ପାଦନ ଧାରା ସାଧାରଣତଃ ସାମାଜିକ, ରାଜନୈତିକ ଓ ବୌଦ୍ଧିକ ଜୀବନ ପ୍ରକ୍ରିୟାକୁ ନିୟନ୍ତ୍ରଣ କରିଥାଏ । ମଣିଷର ଚେତନା ତାର ଅସ୍ତିତ୍ୱର ନିର୍ଦ୍ଧାରଣ କରି ନଥାଏ, ବରଂ ଏହାର ବିପରୀତରେ, ତାର ସାମାଜିକ ଅସ୍ତିତ୍ୱ ହିଁ ତାର ଚେତନାର ନିର୍ଦ୍ଧାରଣ କରିଥାଏ । ସେମାନଙ୍କ ବିକାଶର ଏକ ନିର୍ଦ୍ଦିଷ୍ଟ ସ୍ତରରେ, ସମାଜର ବାସ୍ତବ ଉତ୍ପାଦିକା ଶକ୍ତିଗୁଡ଼ିକ ଓ ପ୍ରଚଳିତ ଉତ୍ପାଦନ ସମ୍ବନ୍ଧଗୁଡ଼ିକ ମଧ୍ୟରେ ସଂଘର୍ଷ ଦେଖା ଦେଇଥାଏ । ଅବା - ସେଇ କଥାକୁ ଆଇନର ଭାଷାରେ କହିଲେ - ଆଜି ପର୍ଯ୍ୟନ୍ତ ସେମାନେ ଯେଉଁ ସମ୍ପତ୍ତି ସମ୍ପର୍କର ଭିତ୍ତିରେ କାମ କରି ଆସୁଥିଲେ ସେଇ ସମ୍ପତ୍ତି ସମ୍ପର୍କ ଓ ସମାଜର ବାସ୍ତବ ଉତ୍ପାଦିକା ଶକ୍ତି ମଧ୍ୟରେ ସଂଘର୍ଷ ଦେଖା ଦେଇଥାଏ । ଏହି ସମ୍ପର୍କଗୁଡ଼ିକ ଉତ୍ପାଦିକା ଶକ୍ତିଗୁଡ଼ିକର ବିକାଶର ଆକାର ହେବା ପରିବର୍ତ୍ତେ ସେଗୁଡ଼ିକର ବେଢ଼ିରେ ପରିଣତ ହୋଇଯାଏ । ତା ପରେ ଆରମ୍ଭ ହୁଏ ସାମାଜିକ ବିପ୍ଳବର ଏକ ଯୁଗ । ଅର୍ଥନୈତିକ ଭିତ୍ତିର ପରିବର୍ତ୍ତନ ସଙ୍ଗେ ସଙ୍ଗେ ବୃହତ୍‌କାୟ ଉପରିଢାଞ୍ଚା (superstructure) ଟିର ସମସ୍ତ କ୍ଷେତ୍ରରେ ଅଳ୍ପ ବହୁତ ଦ୍ରୁତ ଗତିରେ ପରିବର୍ତ୍ତନ ଘଟେ । ଏହି ଭଳିଆ ପରିବର୍ତ୍ତନଗୁଡ଼ିକର ବିଚାର କଲାବେଳେ ସର୍ବଦା ଉତ୍ପାଦନର ଅର୍ଥନୈତିକ ଅବସ୍ଥାର ବାସ୍ତବ ପରିବର୍ତ୍ତନ (ଯାହାର ନିର୍ଦ୍ଧାରଣ ପ୍ରାକୃତିକ ବିଜ୍ଞାନର ସଠିକତା ସହ କରାଯାଇ ପାରିବ) ଠୁଁ ଆଇନ, ରାଜନୀତି, ଧର୍ମ, ସୌନ୍ଦର୍ଯ୍ୟତତ୍ତ୍ୱ ଏବଂ ଦର୍ଶନ ସମ୍ପର୍କୀତ ଆକାରଗୁଡ଼ିକୁ - ସଂକ୍ଷେପରେ କହିଲେ, ଭାବାଦର୍ଶର ଆକାରଗୁଡ଼ିକୁ (ideological forms) -ପୃଥକ କରି ବିଚାର କରାଯିବା ଉଚିତ । ଏହି ଭାବାଦର୍ଶର ଆକାରଗୁଡ଼ିକ ଜରିଆରେ ହିଁ ମଣିଷ ଏହି ସଂଘର୍ଷ ପ୍ରତି ସଚେତନ ହୋଇଥାଏ ଓ ଲଢ଼େଇ ଦ୍ୱାରା ତାର ସମାଧାନ କରିଥାଏ । ଯେପରି ଜଣେ ଲୋକ ସମ୍ପର୍କରେ ଆମର ମତାମତ ସେ ତା ନିଜ ସମ୍ପର୍କରେ କଣ ଭାବୁଛି ତାକୁ ଭିତ୍ତି କରି ହୋଇ ନଥାଏ, ସେପରି ପରିବର୍ତ୍ତନର ଏକ ଯୁଗକୁ ତାର ନିଜର ଚେତନା ଦ୍ୱାରା ବିଚାର କରି ପାରିବାନି, ଓଲଟି ତାର ଚେତନାକୁ ବାସ୍ତବ ଜୀବନର ଦ୍ୱନ୍ଦ୍ୱ ସାହାଯ୍ୟରେ, ସାମାଜିକ ଉତ୍ପାଦିକା ଶକ୍ତି ଓ ଉତ୍ପାଦନ ସମ୍ବନ୍ଧ ମଧ୍ୟରେ ଥିବା ସଂଘର୍ଷ ସାହାଯ୍ୟରେ ହିଁ ବ୍ୟାଖ୍ୟା କରିବାକୁ ହେବ । କୌଣସି ଏକ ସାମାଜିକ ବ୍ୟବସ୍ଥାରେ ଯେଉଁ ସମସ୍ତ

ଉତ୍ପାଦିକା ଶକ୍ତିର ବିକାଶର ସୁଯୋଗ ଥାଏ ସେହି ସମସ୍ତ ଉତ୍ପାଦିକା ଶକ୍ତି ବିକଶିତ ନହେବା ଯାଏଁ ସେହି ସାମାଜିକ ବ୍ୟବସ୍ଥା ଉଭେଇ ଯାଏନା ଓ ଉତ୍ପାଦନର ନୂଆ ତଥା ଉଚ୍ଚତର ସମ୍ବନ୍ଧଗୁଡ଼ିକର ଅସ୍ତିତ୍ୱ ପାଇଁ ଆବଶ୍ୟକୀୟ ବାସ୍ତବ ପରିସ୍ଥିତିଗୁଡ଼ିକ ଖୋଦ୍ ପୁରୁଣା ସମାଜର ଗର୍ଭ ଭିତରେ ପରିପକ୍ୱ ନହେବା ପର୍ଯ୍ୟନ୍ତ ସେଗୁଡ଼ିକ କେବେ ହେଁ ଦେଖା ଯାଏନା । ତେଣୁ ମାନବଜାତି ସର୍ବଦା କେବଳ ସେହି କାମକୁ ହିଁ ହାତକୁ ନେଇଥାଏ ଯାହାର ସମାଧାନ ସେ କରି ପାରିବ, ଅଥଚ୍ ବିଷୟଟିକୁ ଆହୁରି ଗଭୀର ଭାବେ ଅନୁଧ୍ୟାନ କଲେ ଆମେ ସର୍ବଦା ଦେଖୁ ଯେ ଖୋଦ୍ କାମଟି ସେତେବେଳେ ଦେଖା ଦେଇଥାଏ ଯେତେବେଳେ ତାର ସମାଧାନ ପାଇଁ ଆବଶ୍ୟକୀୟ ସମସ୍ତ ବାସ୍ତବ ପରିସ୍ଥିତି ଉପସ୍ଥିତ ହୋଇସାରିଥାଏ ଅବା ସେଥିପାଇଁ ଅନ୍ତତଃ ଗଠନ ପ୍ରକ୍ରିୟାରେ ଥାଏ ।"(Karl Marx, *Selected Works,* Eng. ed., Moscow 1946, Vol. I, pp. 300-01.)

ଏହା ହିଁ ହେଉଛି ସାମାଜିକ ଜୀବନ କ୍ଷେତ୍ରରେ, ସମାଜର ଇତିହାସ କ୍ଷେତ୍ରରେ ପ୍ରୟୋଗ ହୋଇଥିବା ମାର୍କ୍ସବାଦୀ ବସ୍ତୁବାଦ ।

ଏହା ହିଁ ହେଉଛି ଦ୍ୱନ୍ଦ୍ୱାତ୍ମକ ଓ ଐତିହାସିକ ବସ୍ତୁବାଦର ମୁଖ୍ୟ ବୈଶିଷ୍ଟ୍ୟାବଳୀ ।

